# ସେତୁବନ୍ଧନ ନାଟକ ।

ନାନ୍ଦ୍ୟନ୍ତେ ସୂତ୍ରଧାର—ଆହେ ଅତ୍ରାସୀନ ସମସ୍ତ ଭାବଗ୍ରାହୀ ଦର୍ଶକଗଣ, ଆଜି ଅମ୍ଭେ ଏଠାରେ ସେତୁବନ୍ଧନ ନାଟକ ଅଭିନୟ କରିବୁଁ, ଆପଣମାନେ ମନୋନିବେଶ କରିବା ହୁଅନ୍ତୁ; ଏ ନାଟକ କରୁଣରସାତ୍ମକ କିନ୍ତୁ ରାମଚରିତାମୃତରେ ସିକ୍ତ ହୋଇଅଛି, ଏହେତୁ ଅମ୍ଳରସ ମିଶ୍ରିତ ରସ ସଂଯୋଗରେ ମନୋହର ବୋଧ ହେଲାପରି ଏ ନାଟକ ଆପଣମାନଙ୍କୁ ମନୋହର ବୋଧ ହେବ । (ନଟୀକୁ ଅବଲୋକନ କରି) ପ୍ରିୟେ ! ଗାଲରେ ହାତ ଦେଇ ଏପରି ଚିନ୍ତିତ ଭାବରେ କାହିଁକି ଉଭାହୋଇ ଅଛ ? ଏଣିକି ଆସିଲ !

ନଟୀ—( ରାଗକର କଟି ପ୍ରବନ୍ଧ )—

କାହିଁକି ଡାକୁଛ ମତେ ହେ ପ୍ରାଣେଶ୍ୱର,
ନାହିଁ ନାହିଁ ସୁଖ ଆଜ ମନ ମୋହର ( ଘୋଷା )
ଦୈବବାଧ ଦେଖି ମନ ହେଉଅଛି ଅଛିଳ ।
ବିଷାଦ ଅବୋଧ ଅଛି ମୋର ଅନ୍ତର ॥ ୧ ॥
ସକଳ ଗୁଣ ଆକର ଥିଲେ ଆମ୍ଭ ରଘୁବର,
ଅମ୍ଭମାନଙ୍କର ଥିଲେ ସେ ପ୍ରିୟତର ॥ ୨ ॥
ସେ ହେଲେ ଏଥୁଁ ଅନ୍ତର ଦେଖ ଦଇବ ବିଚାର,
ଦୁଃଖମୟ କରି ଗଲେ ଅମ୍ଭ ସଂସାର । ୩ ।
ଅଯୋଧ୍ୟାବାସୀ ସକଳ ହେଉଅଛନ୍ତି ବ୍ୟାକୁଳ,
ଆବାଳ ବୃଦ୍ଧ ବନିତା ସର୍ବେ କାତର । ୪ ।

ମାତୁଳାଳୟୁଁ ଆଗତ ଶତ୍ରୁଘ୍ନ ସହ ଭରତ,
ଦୁଃଖେ ଗଡାଉଅଛନ୍ତି ଲୋତକ ଧାର । ୫ ।

ସୂତ୍ରଧାର—ପ୍ରିୟେ ! ଭରତ ପରା ରାଜା ହେବେ ? ତାହାଙ୍କର ଆନନ୍ଦିତ ହେବାର କଥା, ସେ କାହିଁକି ଦୁଃଖରେ ଲୋତକଧାର ଗଡାଉ ଅଛନ୍ତି ?

ନଟୀ—ଭରତଙ୍କର ରାଜା ହେବା ଅଭିମତ ନୁହେ । ରାମଚନ୍ଦ୍ର ପ୍ରଭୃତି ବନକୁ ବାହାରଯିବା କଥା ଶୁଣି ସେମାନଙ୍କୁ ଝୁରି ଝୁରି ଏପରି ବିକଳ ହୋଇ କାନ୍ଦୁ ଅଛନ୍ତି ଯେ ତାହାଙ୍କୁ ଦେଖି ଆମ୍ଭ ହୃଦୟ ବିଦୀର୍ଣ୍ଣ ହୋଇ ଯାଇଅଛି, ଅଜ ଆମ୍ଭେ ଆପଣଙ୍କ ଆଦେଷ୍ଟ ନାଟକ ଏ ରଙ୍ଗ ଭୂମିରେ ଅଭିନୟ କରାଇ ପାରିବୁଁ ନାହିଁ ।

ସୂତ୍ରଧାର—କଅଣ କହିଲ ? ଅଜ ଅଭିନୟ କରାଇ ପାରିବ ନାହିଁ ? ଦେଖ କୁମୁଦ ପଦ୍ମ କହ୍ଲାର ପ୍ରଭୃତି ମନୋଜ୍ଞ ଜଳଜ ପୁଷ୍ପମାନଙ୍କରେ ପୁଷ୍କରଣୀ-ଶ୍ରୀସମ୍ପନ୍ନା ହେଲାପରି, ଏ ସଭା ନାନା ବିଦ୍ୱଜ୍ଜନ ମଣ୍ଡଳରେ ଶ୍ରୀସମ୍ପନ୍ନା ହେଲାଣି; ତୁମ୍ଭେ ଏତେବେଳେ ଅଭିନୟ କରାଇ ପାରିବ ନାହିଁ ବୋଲି କହୁଛ ? ସ୍ତ୍ରୀମାନଙ୍କ ହୃଦୟ ଅତି କୋମଳ, ପରର ଦୁଃଖ ଦେଖିଲେ ହଠାତ୍ ବିଗଳିତ ହୋଇ ଯାଏ; ଆସ ଆସ, ଅଜ ଅମ୍ଭେ ତୁମ୍ଭଙ୍କୁ ଏକାର୍ଯ୍ୟରେ ସହାୟ ହେବୁଁ, ଦୁହେଁ ମିଶି ଅଜ ଏ ନାଟକ ଅଭିନୟ କରାଇବା ।

ନଟୀ—ଅଜ୍ଞା, ଅସିବା ହୁଅନ୍ତୁ । ( ଉଭୟଙ୍କର ପ୍ରସ୍ଥାନ )

ପ୍ରସ୍ତାବନା ।

## ୧ମ ଦୃଶ୍ୟ ।

(ନିଜଗୃହରେ ଭରତ ଶତ୍ରୁଘ୍ନ ଦୁଃଖିତ ଭାବରେ ପିତାଙ୍କ ଲିଖିତ ମୂର୍ତ୍ତି ଦେଖୁଥିବା)

ଶତ୍ରୁଘ୍ନ—ଏ ଲିଖିତ ମୂର୍ତ୍ତି ଠିକ ପିତାଙ୍କ ଅକୃତ୍ତ ପର ହୋଇଅଛି ।

ଭରତ—( ସକରୁଣେ ) ବତ୍ସ ଶତ୍ରୁଘ୍ନ ! ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାତ ଏକ ପ୍ରକାର ସମାଧା ହୋଇ ଗଲା, ଆସ ଆଜ ଯାଇ ରାମଚନ୍ଦ୍ର ପ୍ରଭୁତଙ୍କୁ ବନରୁ ଲେଉଟାଇ ଘେନ ଆସିବା ।

ଶତ୍ରୁଘ୍ନ—ଆଜ୍ଞା, ଏକପ୍ରକାରେ କାହିଁକ ! ଯେପର ହେବା ଉଚିତ ସେହିପର ହୋଇଅଛି; ବ୍ରାହ୍ମଣ, ଅତିଥିଅଭ୍ୟାଗତ ଆଉ ଅମ୍ଭ ସମସ୍ତ ନଗରବାସୀ ପ୍ରଜାମାନେ ଧନ୍ୟ ଧନ୍ୟ କରୁଅଛନ୍ତି ।

ଭରତ—କିନ୍ତୁ ବତ୍ସ ! ପିତାଙ୍କର ସ୍ୱାଭିବକ ମରଣ ହୋଇଥିଲେ ଆଉ ଆର୍ଯ୍ୟ ରାମଚନ୍ଦ୍ର ପ୍ରଭୁତ ଏଠାରେ ଥିଲେ ଯେପର ଉତ୍ସାହ ସହକାରେ କାର୍ଯ୍ୟ ହୋଇ ଥାଆନ୍ତା ସେପର ହୋଇକ ?

ଶତ୍ରୁଘ୍ନ—ସେପର କାହୁଁ ହୁଅନ୍ତ ! ରାମଚନ୍ଦ୍ର ପ୍ରଭୁତଙ୍କ ନର୍ବା-ସନରେ ସମସ୍ତେ ଦୁଃଖିତ ଅଛନ୍ତି ।

ଭରତ—ହା ଦୈବ ! ମୁଁ ଯାହା କେବେ ମନରେ ସୁଦ୍ଧା ଭାବିନଥିଲ ସେହିକଥା ଆଣି ଘଟାଇଲୁ ? ( ଲୁହ ପୋଛିବା )

ଶତ୍ରୁଘ୍ନ—ଆର୍ଯ୍ୟ ! ଆପଣଙ୍କ ମାତା ରାମଚନ୍ଦ୍ରଙ୍କୁ ଅମ୍ଭମାନଙ୍କ ଅପେକ୍ଷା ଅଧିକ ସ୍ନେହ କରୁ ଥିଲେ ସେ କାହିଁକି ହଠାତ୍ ସ୍ନେହଶୂନ୍ୟ ହୋଇ ତାହାଙ୍କର ଏ ଅନଷ୍ଟ କରପକାଇଲେ ?

ଭରତ—ବତ୍ସ ! ମୁ ପରଷ୍ପରେ ଶୁଣିଲି, ସେହି ସର୍ବ ଅନଷ୍ଟକାରିଣୀ ମନ୍ଥରା ଏ ଅମଙ୍ଗଳକର କଥାକୁ ମଙ୍ଗଳକର ବୋଲି ଆମ୍ଭ-ମାତାଙ୍କୁ ବୁଝାଇ ଦେବାରୁ ସେ ଅମ୍ଭମାନଙ୍କର ଏ ଅମଙ୍ଗଳ ଘଟାଇ ଅଛନ୍ତି ।

ଶତ୍ରୁଘ୍ନ—ପ୍ରକୃତକଥା, ଅମ୍ଭମଧ୍ୟମା ମାତା ସେ ଦାସୀଙ୍କ କଥାରେ ଚାଲିଲେ, ମତେ ଆଜ୍ଞା ଦିଅନ୍ତୁ, ମୁ ଏହିକ୍ଷଣି ସେ କୁଜାକୁ ଉତ୍ତମ

ମଧ୍ୟମ ଶିକ୍ଷା ଦେଇ ଅମ୍ଭରାଜ୍ୟମଧ୍ୟରୁ ତଡ଼ିଦେଇ ଆସିବ ।

ଭରତ—ଏତେବେଳେ ତଡ଼ିଦେଲେ କଅଣ ହେବ ? ବତ୍ସ ! ଅମ୍ଭ ପିତାଙ୍କର କ ଦୁର୍ଗତି ହେଲା; ତାହାଙ୍କର ଆଜ୍ଞାବହ ଅମ୍ଭେ ଚାରିପୁତ୍ର ଥାଉ ଥାଉ ମରଣ କାଳରେ ଜଣକ ହାତରୁ ସୁଦ୍ଧା ଗଙ୍ଗାଜଳ ଟୋପାଏ ପାନ କରିବାକୁ ପାଇଲେ ନାହିଁ ?

ଶତ୍ରୁଘ୍ନ—ଆଜ୍ଞା, ଅମ୍ଭ ପିତାମହାଶୟ ନିଜେ ଏ ଶୋଚନୀୟ ମୃତ୍ୟୁର କାରଣ ହୋଇଥିଲେ ।

ଭରତ—( ସକରୁଣେ ) ସେ କାହିଁକି ହୁଅନ୍ତେ, ଅମ୍ଭେ ତାହାଙ୍କର ଏ ଶୋଚନୀୟ ମୃତ୍ୟୁର କାରଣ ହୋଇଅଛୁଁ ।

ସୁବେଶୀ ମନ୍ଥରାର ପ୍ରବେଶ ।

ମନ୍ଥରା—ବାବୁ, ଭରତ ! ମହାରାଜାଙ୍କର ତ ଶୁଦ୍ଧକାମ ସରିଲାଣି ପାତ୍ର ମନ୍ତ୍ରୀମାନଙ୍କୁ ଡକାଇ ବେଗେ ଖାଇଜରେ ରଜାହୋଇ ପଡ଼ୁନାହିଁ କାହିଁକି ?

ଭରତ—ଚଣ୍ଡାଳୁଣି ! ମୋ ପୋଡ଼ା ଘାରେ ଲୁଣ ଦେବାକୁ ଆସିଚି, ବତ୍ସ ! ଶୀଘ୍ର ଏହାକୁ ଏଠାରୁ ବାହାର କରିଦିଅ ।

ଶତ୍ରୁଘ୍ନ—( ଦଉଡ଼ି ଯାଇ ମନ୍ଥରାର ଚୁଟିଧରି ଘୋଷାରି ଆଣି ) ଆର୍ଯ୍ୟ ! ଦେଖନ୍ତୁ ଅମ୍ଭ କୁଜୀ କେତେ କଳ କାଟିଚି, କେଲାଙ୍କ ବାନରୀ ପରି କପଟ ବେଶ ହୋଇଚି; ଏହାକୁ ଶୂଳରେ ଦେଲେ ବେଶ ମାନନ୍ତା ।

ମନ୍ଥରା—( ସକରୁଣେ ) ମୁଁ ତ ତମର ଭଲ କହୁଚି ମୋତେ କାହିଁକି ଶୂଳରେ ଦେବ ମ ?

ଶତ୍ରୁଘ୍ନ—( ଘୋଷାରି ପାଦାଘାତ କରିବା )

ମନ୍ଥରା—ମରିଗଲି ମରିଗଲିଲୋ ବୋପା, ମୁଁ ହାତ୍ରେ କୁଟା ହଉଚି ମତେ ଛାଡ଼ିଦିଅ, ମୁଁ ତମରାଇଜରୁ ପଳେଇବି ବାହାରି ଯାଉଚି ମତେ ମାରନା ।

ଭରତ—ବନ୍ଧୁ ! ସ୍ତ୍ରୀମାନେ ଅବଧ୍ୟ, ଆଉ ଏ ଅମ୍ଭ ମାତୃସ୍ଥାନୀୟା ଦାସୀ, ଏହାଙ୍କୁ ବିନାଶ କରିବା ଶୁଣିଲେ ଧାର୍ମିକ ରାମଚନ୍ଦ୍ର ଅମ୍ଭମାନଙ୍କପ୍ରତି ବିରାଗାନ୍ୱିତ ହେବେ ଆଉ ଅମ୍ଭମାନଙ୍କ ସହିତ ସମ୍ଭାଷଣ କରିବେ ନାହିଁ, ଏହାଙ୍କୁ ଛାଡିଦିଅ ।

ଶତ୍ରୁଘ୍ନ—( ପୁନଃ ପଦାଘାତ କରି ) ଯା, ରାଣ୍ଡି ! ଯା, ଧାର୍ମିକ ରାମଚନ୍ଦ୍ରଙ୍କ ଭୟରେ ଆଜି ଆମ୍ଭେ ତୋତେ ଛାଡିଦେଲୁ ।

ମନ୍ଥରା— ( କାନ୍ଦି କାନ୍ଦି ପ୍ରସ୍ଥାନ )

ସୁମନ୍ତ୍ରଙ୍କର ପ୍ରବେଶ ।

ସୁମନ୍ତ୍ର—ରାଜକୁମାରଙ୍କର ଜୟହେଉ, ଦେବ ! ଆପଣଙ୍କ ପିତା ଦଶରଥ ମହାରାଜ, ଗୁରୁଙ୍କ ଅପେକ୍ଷା ଅମ୍ଭମାନଙ୍କର ଅଧିକ ମାନନୀୟ ଥିଲେ, ତାହାଙ୍କ ଭୁଜଛାୟାକୁ ଆଶ୍ରୟ କରି ଅମ୍ଭେ-ମାନେ ଆଜି ପର୍ଯ୍ୟନ୍ତ ସୁଖ ସ୍ୱଚ୍ଛନ୍ଦରେ କାଳଯାପନ କରୁଥିଲୁଁ, ସେ ତାହାଙ୍କ ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ରଙ୍କୁ ଆଉ ମହାବଳୀ ଲକ୍ଷ୍ମଣଙ୍କୁ ବନରେ ନିର୍ବାସିତ କରି ସ୍ୱର୍ଗଗାମୀ ହୋଇ ଅଛନ୍ତି, ବର୍ତ୍ତମାନ ରାଜ୍ୟ ଅରାଜକ ହୋଇଅଛି, ଏ ହେତୁ ଆପଣଙ୍କ କୁଳଗୁରୁ ବଶିଷ୍ଠଦେବ ସମସ୍ତ ଅଭିଷେକ ସାମଗ୍ରୀ ସଂଗ୍ରହ କରାଇ ଆପଣଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇବେ ବୋଲି ପାତ୍ର ମନ୍ତ୍ରୀ ଆଉ ସମୃଦ୍ଧିଶାଳୀ ପ୍ରଜାବର୍ଗଙ୍କ ସହ ସଭାରେ ଆସୀନ ହୋଇ ଆପଣଙ୍କୁ ଅପେକ୍ଷା କରୁ ଅଛନ୍ତି, ଆପଣ ରାଜ୍ୟରେ ଅଭିଷିକ୍ତ ହୋଇ ଅମ୍ଭମାନଙ୍କୁ ପ୍ରତିପାଳନ କରନ୍ତୁ ।

ଭରତ—ସୁମନ୍ତ୍ର ! ଆପଣ କଅଣ ଜାଣନ୍ତି ନାହିଁ ? ଅମ୍ଭ କୁଳରେ ଜ୍ୟେଷ୍ଠପୁତ୍ର ରାଜ୍ୟ ପାଇବାର ଅଧିକାରୀ, ରାମଚନ୍ଦ୍ର ଏରାଜ୍ୟରେ ଅଭିଷିକ୍ତ ହେବେ, ଅମ୍ଭେ କଦାଚ ଅମ୍ଭ ପୁତ୍ରଦ୍ୱେଷିଣୀ ମାତାଙ୍କ ଇଚ୍ଛା ପୂର୍ଣ୍ଣ କରିବୁ ନାହିଁ ।

ସୁମନ୍ତ୍ର—ବାବୁ ! ସତ୍ୟନିଷ୍ଠ ରାମଚନ୍ଦ୍ର ପିତୃସତ୍ୟ ରକ୍ଷାକରିବା ନିମିତ୍ତ

ବନରେ ଚଉଦବର୍ଷ ବାସ କରବାକୁ ଯାଇ ଅଛନ୍ତି, ବର୍ତ୍ତ-
ମାନ ରାଜ୍ୟ ଅରାଜକ ହୋଇଅଛି, କାଳ ବିଲମ୍ବ ହେଲେ
ପ୍ରଜାମାନଙ୍କ ମଧ୍ୟରୁ କେହି କୌଣସି ଅମଙ୍ଗଳର ଅନୁଷ୍ଠାନ
କର ପାରନ୍ତି, ଶତ୍ରୁମାନେ ଛିଦ୍ର ଦେଖି ଆକ୍ରମଣ କର ପାରନ୍ତି
ଏତେକାଳ ଅପେକ୍ଷା କରାଯାଇ ପାରବ କି ?

ଭରତ—ସେତେକାଳ ଅପେକ୍ଷା କରବାକୁ ହେବ ନାହିଁ, ଆଜ
ଆମ୍ଭେ ତାହାଙ୍କୁ ବନରୁ ଫେରାଇ ଆଣିବାକୁ ଯିବୁଁ, ଯଦ
ସେ ପିତୃସତ୍ୟ ଭଙ୍ଗ ଭୟରେ ଫେର ଆସିବାକୁ ନାହିଁ
କରବେ, ତେବେ ଆମ୍ଭେ ତାହାଙ୍କ ପରିବର୍ତ୍ତେ ବନରେ ବାସ
କରବୁଁ, ସେ ଆସି ଏଠାରେ ରାଜା ହେବେ, ଶତ୍ରୁଘ୍ନ ଆସ
ଗୁରୁଙ୍କଠାରୁ ବିଦାୟ ନେଇ ଶୀଘ୍ର ବନକୁ ଯିବା ।

ଶତ୍ରୁଘ୍ନ—ଆଜ୍ଞା, ଆସିବା ହୁଅନ୍ତୁ       ( ସମସ୍ତଙ୍କର ପ୍ରସ୍ଥାନ ) ।

## ୨ୟ ଦୃଶ୍ୟ ।

(ବଶିଷ୍ଠ ସଭାପତି ଆସନରେ ଆସୀନ, ଓ ସମ୍ଭ୍ରାନ୍ତ ପ୍ରଜାବର୍ଗ)

ବଶିଷ୍ଠ—( ଦଣ୍ଡାୟମାନ ହୋଇ )—ଆର୍ଯ୍ୟଗଣ ! ବର୍ତ୍ତମାନ ଆମ୍ଭ-
ମାନଙ୍କର ଏପର ସମୟ ଉପସ୍ଥିତ ହୋଇଅଛି ଯେ ଭରତଙ୍କୁ
ଶୀଘ୍ର ରାଜ୍ୟରେ ଅଭିଷିକ୍ତ କରାଇ ନ ଦେଲେ ବିଶେଷ
ଅମଙ୍ଗଳ ଘଟିବାର ସମ୍ଭାବନା, ଏ ହେତୁରୁ ଆମ୍ଭେ ସମସ୍ତ
ବ୍ରାହ୍ମଣ ଅମାତ୍ୟ, ସୈନିକ ଏବଂ ସେନାପତିମାନଙ୍କୁ ଆଉ
ରାଜବଂଶର ଆତ୍ମୀୟ ଓ ହିତକାରୀ ଯୁଧାଜିତ ପ୍ରଭୃତିଙ୍କୁ ଡକାଇ
ପଠାଇ ଅଛୁଁ, ସୁମନ୍ତ୍ର ଯଶସ୍ୱୀ ଭରତଙ୍କୁ ଏ ସଭାକୁ ଆଣିବା
ନିମନ୍ତେ ଯାଇ ଅଛନ୍ତି, କାଲି ଶୁଭଦିନ ଅଛି, କାଲି ଭର-
ତଙ୍କୁ ତାହାଙ୍କ ପିତୃ ମାତୃଦତ୍ତ ରାଜ୍ୟରେ ଅଭିଷିକ୍ତ କରାଇ
ଦେବା, ତୁମ୍ଭମାନଙ୍କର କି ଅଭିମତ ?

ଏକଜଣ ( ଦଣ୍ଡାୟମାନହୋଇ ) ରାଜ୍ୟ ଅରାଜକ ହୋଇଅଛି,

ଭରତଙ୍କୁ ଶୀଘ୍ର ଅଭିଷିକ୍ତ କରାଇବା ହୁଅନ୍ତୁ, ଅମ୍ଭମାନଙ୍କର ଏହି ମତ । ( ଅପାନ )

ନେପଥ୍ୟେ—( ଶଙ୍ଖ ଦୁନ୍ଦୁଭି ପ୍ରଭୃତି ବାଜିବା )

ସୁମନ୍ତ୍ରଙ୍କସହ ଭରତ ଶତ୍ରୁଘ୍ନଙ୍କର ପ୍ରବେଶ ।

ଭରତ—( ହାତ ହଲାଇ ) ଆମ୍ଭେ ରାଜା ନୋହୁଁ ଆମ୍ଭେ ରାଜା-ନୋହୁଁ, ଆମ୍ଭଙ୍କୁ କାହିଁକି ରାଜୋପଚାରରେ ସମ୍ମାନ କରୁଚ ? ବନ୍ଦକର,

ନେପଥ୍ୟେ—( ନୀରବ) (ସଭ୍ୟମାନେ ଦଣ୍ଡାୟମାନ ହେବା )

( ଭରତ ଶତ୍ରୁଘ୍ନ ଗୁରୁଙ୍କୁ ପ୍ରଣାମ କରିବା ) ।

ବଶିଷ୍ଠ— ବାବୁ ! ଚିରଜୀବୀ ହୋଇଥାଅ, ଅସ ଅମ୍ଭ ନିକଟରେ ବସ ।

ଭରତ ଶତ୍ରୁଘ୍ନ—( ଗୁରୁଙ୍କ ନିକଟରେ ବସିବା )

ବଶିଷ୍ଠ—ବାବୁ ! ଏ ଧନ ଧାନ୍ୟ ପୂର୍ଣ୍ଣରାଜ୍ୟ ମହାରାଜ ତୁମ୍ଭଙ୍କୁ ପ୍ରଦାନ କରି ସ୍ୱର୍ଗଗାମୀ ହୋଇ ଅଛନ୍ତି ଆଉ ସତ୍ୟଧର୍ମନିରତ ତୁମ୍ଭ ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ର ସାଧୁଜନସେବିତ ଧର୍ମ ମାର୍ଗ ଅନୁସରଣ କରି ବନବାସୀ ହୋଇଅଛନ୍ତି, ବର୍ତ୍ତମାନ ରାଜ୍ୟ-ଅରାଜକ ହୋଇଅଛି, କାଲି ତୁମ୍ଭେ ତୁମ୍ଭ ପିତୃମାତୃଦତ୍ତ ଅକଣ୍ଟକରାଜ୍ୟ ଗ୍ରହଣ କର, ଏ ସମୃଦ୍ଧିଶାଳୀ ପ୍ରଜାମାନେ ତୁମ୍ଭଙ୍କୁ କୋଟି କୋଟି ଧନରତ୍ନ ଉପହାର ପ୍ରଦାନ କରନ୍ତୁ ।

ଭରତ—( ଦଣ୍ଡାୟମାନ ହୋଇ ) ଗୁରୋ ! ଆମ୍ଭ ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ର ବୁଦ୍ଧିମାନ୍ କାର୍ଯ୍ୟଦକ୍ଷ ଆଉ କୃତବିଦ୍ୟ ଅଟନ୍ତି, ସେ ସୁଚାରୁରୂପେ ଏରାଜ୍ୟ ଶାସନ କରିବାକୁ ସମର୍ଥ, ଆଉ ସେ ମହାରାଜାଙ୍କର ଜ୍ୟେଷ୍ଠପୁତ୍ର ଥିବାରୁ ଏରାଜ୍ୟ ତାହାଙ୍କର ପ୍ରାପ୍ୟ ହେଉଅଛି, ଅଜ୍ଞା, ଯେ ଦଶରଥ ମହାରାଜାଙ୍କର ଔରଷରେ ଜନ୍ମିଥିବ ସେ କିପରି ଅନାର୍ଯ୍ୟଗଣ ସେବିତ, ଅସତ୍ୟପଥ ଅନୁ-

ସରଣକରି ପରର ରାଜ୍ୟ ଗ୍ରହଣ କରିବାକୁ ଇଚ୍ଛା କରିବ ?
ଆଉ ଆମ୍ଭେ ଏରାଜ୍ୟ ଗ୍ରହଣ କଲେ ଇହ ଲୋକରେ ଇକ୍ଷ୍ୱାକୁ
କୁଳର କଳଙ୍କହୋଇ ଅଖ୍ୟାତ ଲଭିବୁଁ, ଅନ୍ତେ ସ୍ୱର୍ଗଲାଭ
କରି ପାରିବୁଁ ନାହିଁ, ଏହେତୁ ଆମ୍ଭର ରାଜ୍ୟରେ ଅଭିଷିକ୍ତ
ହେବାକୁ ଇଚ୍ଛାନାହିଁ, ଅମ୍ଭମାତାଙ୍କ ଦ୍ୱାରା ଏଯେଉଁ ପାପ
କାର୍ଯ୍ୟ ଅନୁଷ୍ଠିତ ହୋଇଅଛି ତାହା ଆମ୍ଭର ଅଭିମତ ନୁହେ,
ଆଜ ଆମ୍ଭେ ଆର୍ଯ୍ୟ ରାମଚନ୍ଦ୍ରଙ୍କୁ ବନରୁ ଫେରାଇ ଆଣିବା-
ନିମନ୍ତେ ବନକୁ ଯିବାକୁ ସଂକଳ୍ପ କରିଅଛୁଁ, ଆପଣ ସୁମନ୍ତ୍ରଙ୍କୁ
ଆଜ୍ଞା କରନ୍ତୁ, ସେ ଶୀଘ୍ର ଆଜ ଆମ୍ଭଙ୍କୁ ରାମଚନ୍ଦ୍ରଙ୍କ ନିକଟରେ
ପହଁଚାଇ ଦେବେ ।

ବଶିଷ୍ଠ—ବତ୍ସ ! ତୁମ୍ଭେ ଧନ୍ୟ, ଯେହେତୁ ଅଯତ୍ନଲବ୍ଧ ରାଜ୍ୟ ତ୍ୟାଗ
କରିବାକୁ ସଂକଳ୍ପ କରିଛ, ହଉ, ତୁମ୍ଭେ ଆଜ ରାମଚନ୍ଦ୍ରଙ୍କୁ
ଫେରାଇ ଆଣିବା ନିମିତ୍ତ ବନକୁ ଯାଅ, ଯଦି ସେ ଅମ୍ଭମାନଙ୍କ
ଶୁଭାଦୃଷ୍ଟକୁ ଫେରି ଆସିବେ, ତେବେ ସେ ରାଜା ହେବେ,
ନୋହିଲେ ସେ ଆସିବା ଯାଏ, ତୁମ୍ଭେ ରାଜା ହେବା ସ୍ଥିର
ରହିଲା । ସୁମନ୍ତ୍ର ! ତୁମ୍ଭେ ହସ୍ତୀ ଅଶ୍ୱରଥ ପ୍ରସ୍ତୁତ ନେଇ ଭରତ
ସଙ୍ଗେ ଯାଅ, ଯଦି ରାମଚନ୍ଦ୍ର ଆସିବାକୁ ସମ୍ମତ ହେବେ ତେବେ
ତାଙ୍କୁ ରଥରେ ବସାଇ ସାଡମ୍ବରେ ଘେନି ଆସିବ ।

ସୁମନ୍ତ୍ର—ଯେ ଆଜ୍ଞା ।

ବଶିଷ୍ଠ—ଆର୍ଯ୍ୟଗଣ ! ତୁମ୍ଭମାନଙ୍କ ମଧ୍ୟରୁ ଯଦି କେହି ବନକୁ
ଯିବାକୁ ଇଚ୍ଛାକର ତ ଯାଇପାର, ଆଜ ସଭାଭଙ୍ଗ କରା ଯାଉ ।

ସମସ୍ତେ—ଯେ ଆଜ୍ଞା, (ସମସ୍ତଙ୍କର ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ ।

( ରାମଚନ୍ଦ୍ର ପ୍ରହୃଷ୍ଟ ହୋଇ ସୀତାଦେବୀଙ୍କୁ ଚିତ୍ରକୂଟ ପର୍ବତ ଦେଖାଉଥିବା ଦୃଶ୍ୟ । )

ରାମ—ପ୍ରିୟେ ! ଦେଖ, ଏ ଚିତ୍ରକୂଟ ପର୍ବତରେ, ଥିବା ଆମ୍ର, ପଣସ,

ଶାଲ, ପିଅଶାଲ ପ୍ରଭୃତି ବୃକ୍ଷମାନଙ୍କ ଉପରେ କପର ନାନା-
ବିଧ ପକ୍ଷୀ ବସି ସାନନ୍ଦେ ମନୋହର ଗାନ କରୁ ଅଛନ୍ତି, ଏ
ପରମ ରମଣୀୟ ଶୈଳଦର୍ଶନ କରି ଆମ୍ଭ ମନରୁ ରାଜ୍ୟନାଶ ଓ
ସୁହୃଜ୍ଜନ ବିୟୋଗ ଦୁଃଖ ଦୂର ହୋଇ ଯାଉଅଛି ।

ସୀତା—ଆର୍ଯ୍ୟପୁତ୍ର ! ଏ ପର୍ବତର ଶୃଙ୍ଗସବୁ କେତେ କେତେ ଉଚ୍ଚ
ହୋଇଅଛି ? ଏମାନଙ୍କ ଶିଖରଦେଶ ଏପରି ଶୁକ୍ଳବର୍ଣ୍ଣ
କାହିଁକି ଦେଖାଯାଉଅଛି ?

ରାମ—ଏମାନଙ୍କ ଶିଖର ଦେଶରେ ନିହାର ସଞ୍ଚିତ ଥିବାରୁ ଏ ଏପରି
ଶୁକ୍ଳବର୍ଣ୍ଣ ଦେଖାଯାଉ ଅଛି । ଦେଖ, ଏମାନେ କପର ବିଚିତ୍ର
ଦେଖାଯାଉ ଅଛନ୍ତି ! କେଏ ରକ୍ତବର୍ଣ୍ଣ, କେଏ ରଜତବର୍ଣ୍ଣ; କେଏ
ସୁଶୋଭନ ମଣିପରି ମନୋହର ଦେଖା ଯାଉଅଛି ।

ସୀତା—ନାଥ ! ଅମ୍ଭେମାନେ ଏଠାରେ ରହି ପ୍ରତିଦିନ ଏ ପର୍ବତର
ଶୋଭା ଦେଖୁଥିଲେ ଶୋକାନଳ ଆଉ ଅମ୍ଭମାନଙ୍କୁ ଦଗ୍ଧ-
କରି ପାରିବ ନାହିଁ ।

ରାମ—ପ୍ରକୃତରେ ଏ ଚିତ୍ରକୂଟ ସୌନ୍ଦର୍ଯ୍ୟ ଗୁଣରେ ଇନ୍ଦ୍ରଙ୍କ ଅମରା-
ବତୀ ଏବଂ କୁବେରଙ୍କ ଅଳକାକୁ ପରାସ୍ତ କରୁଅଛି ।

ନେପଥ୍ୟେ—( ଗୋଳମାଳ )

ସୀତା—( ସଭୟେ ରାମଚନ୍ଦ୍ରଙ୍କୁ କୋଳ କରିବା ) ନାଥ ! ବନଜନ୍ତୁ-
ମାନେ କାହିଁକି ଏଣେ ତେଣେ ଦଉଡ଼ା ଦଉଡ଼ି କରୁଅଛନ୍ତି ?
ଚାଲ ଏଠାରୁ ବାହାରିଯିବା ।

ରାମ—ଭୟ କର ନା, ଆମ୍ଭ ହସ୍ତରେ ଧନୁ ଅଛି, ବୋଧହୁଏ ସିଂହ
କୌଣସି ମହାବଳ ହସ୍ତୀକୁ ଆକ୍ରମଣ କରିଅଛି, ଏହେତୁ
ବନ୍ୟ ଜନ୍ତୁମାନେ ଭୟରେ ଏଣେ ତେଣେ ଦଉଡ଼ା ଦଉଡ଼ି
କରୁଅଛନ୍ତି ।

ଲକ୍ଷ୍ମଣ—( ସସମ୍ଭ୍ରମେ ପ୍ରବିଷ୍ଟ ହୋଇ ) ଆର୍ଯ୍ୟ, ଆର୍ଯ୍ୟ ! ହସ୍ତ୍ୟଶ୍ୱରଥ ସମାକୁଳା ମହାଗୀସେନା ଏଣିକି ଆସୁଅଛୁ, ଧନୁର୍ଦ୍ଧାରଣ କରି ସୁସଜ୍ଜିତ ହୁଅନ୍ତୁ ।

ରାମ—ଏଣିକି ଆସୁଅଛୁ ?

ଲକ୍ଷ୍ମଣ—ଆଜ୍ଞା,

ରାମ—ଏ କାହାର ସେନା, ଦେଖିଲ ?

ଲକ୍ଷ୍ମଣ—ଯେ ଆଜ୍ଞା, ( ପ୍ରସ୍ଥାନ )

ରାମ—ବୋଧହୁଏ କୌଣସି ରାଜା ଶିକାର କରିବା ଉଦ୍ଦେଶରେ ଏ ବନରେ ପ୍ରବେଶ କରୁଅଛନ୍ତି ।

ଲକ୍ଷ୍ମଣ—( ପ୍ରବିଷ୍ଟ ହୋଇ ) ଆର୍ଯ୍ୟ ! ଭରତ ରାଜ୍ୟରେ ଅଭିଷିକ୍ତ ହୋଇ ନିଷ୍କଣ୍ଟକରେ ରାଜ୍ୟ ଭୋଗ କରିବ ବୋଲି ଆମ୍ଭମାନଙ୍କୁ ବିନାଶ କରିବାକୁ ସସୈନ୍ୟେ ଏଣିକି ଆସୁଅଛୁ, ଆସ ଧନୁର୍ଦ୍ଧାରଣ କରି ପର୍ବତ ଶିଖର ଆରୋହଣ କରିବା ।

ରାମ—( ହସି ) କଅଣ ଭରତକୁ ଯୁଦ୍ଧରେ ବିନାଶ କରିବା ପାଇଁ ପର୍ବତ ଶିଖର ଆରୋହଣ କରିବା ?

ଲକ୍ଷ୍ମଣ—ଆର୍ଯ୍ୟ ! ଯାହାଲାଗି ଆମ୍ଭେମାନେ ବିପଦ୍‌ଗ୍ରସ୍ତ ହୋଇଥାଇଁ, ଆଉ ଯାହାଲାଗି ଆପଣ ରାଜ୍ୟରୁ ବଞ୍ଚିତ ହୋଇଅଛନ୍ତି, ସେ ପରମଶତ୍ରୁ ଭରତକୁ ବିନାଶକଲେ କିଛିମାତ୍ର ଦୋଷ ହେବନାହିଁ, ସେ ଆମ୍ଭମାନଙ୍କର ପ୍ରଥମେ ଅପକାର କରିଅଛୁ • ତାହାକୁ ଆଜ ସସୈନ୍ୟେ ବିନାଶ କରିବା ଧର୍ମସଙ୍ଗତ ହେଉଅଛୁ ।

ରାମ—ଭରତ ଯଦି ଏଠାକୁ ଆସି ଆମ୍ଭଙ୍କୁ ବିନାଶ କରିବ, ତେବେ କରୁ, ଆମ୍ଭେ ତ କଦାଚ ତାହାକୁ ବିନାଶ କରିବୁ ନାହିଁ ! ଭ୍ରାତୃବତ୍ସଳ ଭରତ କଅଣ ଆମ୍ଭମାନଙ୍କ ଅହିତ ସଙ୍କଳ୍ପ କରି ଏଠାକୁ ଆସିଅଛୁ ? ଆମ୍ଭଙ୍କୁ ତ ସମ୍ଭବ ବୋଧହେଉନାହିଁ, ବିପଦକାଳରେ

କେହୁ ପ୍ରାଣସମ ଭ୍ରାତାର ଅନିଷ୍ଟାଚରଣ କରେ ? ଆମ୍ଭଙ୍କୁ ବୋଧହଉଛି ଜ୍ୟେଷ୍ଠଭ୍ରାତା ରାଜ୍ୟାଧିକାରୀ, ଏହି କୁଳଧର୍ମ ସ୍ମରଣ କରି ଆମ୍ଭମାନଙ୍କୁ ଏଠାରୁ ଫେରାଇ ନେବାକୁ ଆସୁଥିବ, ତୁମ୍ଭର କାହିଁକି ତାହାଠାରୁ ଏପରି ଆଶଙ୍କା ଜନ୍ମୁଅଛି ? ପୂର୍ବେକି ଭରତ ତୁମ୍ଭର କୌଣସି ଅପ୍ରିୟ କାର୍ଯ୍ୟ କରିଥିଲା ?

ଲକ୍ଷ୍ମଣ—ଆଜ୍ଞା, ପୂର୍ବରେ ସେ ଆମ୍ଭର କୌଣସି ଅପ୍ରିୟକାର୍ଯ୍ୟ କରିନାହିଁ ସତ କିନ୍ତୁ ବର୍ତ୍ତମାନତ କରି ଅଛି ।

ରାମ—ସେ ଏ ଅପ୍ରିୟ କାର୍ଯ୍ୟ କପରି କଲା ? ସେ ତ ମାତୁଳାଳୟରେ ଥିଲା, ଆମ୍ଭମାନଙ୍କର ଏ ଅପ୍ରିୟ କାର୍ଯ୍ୟ ତାଙ୍କ ମାତା କରି ଅଛନ୍ତି । ଆସ କୁଟୀରକୁ ଯିବା ବୋଧହୁଏ ଭରତ ଏହିକ୍ଷଣି ଆମ୍ଭମାନଙ୍କ ନିକଟକୁ ଆସିବ ।

ଲକ୍ଷ୍ମଣ—ଯେ ଆଜ୍ଞା, (ଉଭୟଙ୍କର ପ୍ରସ୍ଥାନ)

ଇତି ପ୍ରଥମ ଅଙ୍କ ॥

ଦ୍ୱିତୀୟ ଅଙ୍କର ଅଙ୍କାବତାର

ରତ୍ନମାଳାଧର ଗୋବର୍ଦ୍ଧନର ପ୍ରବେଶ ।

ଗୋବର୍ଦ୍ଧନ—(ମାଳାକୁ ଗ୍ରହି) ଆହା ! ଏ ମାଳାଟି କି ସୁନ୍ଦର ଦେଖାଯାଉଛି ! ଏହା ସ୍ତ୍ରୀମାନଙ୍କର ଭୂଷଣ ଏ ମାଳାଟି ମୋହର କଅଣ ହେବ ? ଯାଉଛି ଏ ମାଳାକୁ ଅନସୂୟାଙ୍କୁ ଦେଇ ଆସିବି ।

ଗୋପାଳ—(ପ୍ରବେଶ ହୋଇ) କହେ ଗୋବର୍ଦ୍ଧନ ! ହାତରେ କଅଣ ?

ଗୋବର୍ଦ୍ଧନ—ଏ ଗୋଟିଏ ରତ୍ନମାଳା ।

ଗୋପାଳ—ରତ୍ନ ପରା ଦୀପ୍ତିମନ୍ତ ଶିଳା ବିଶେଷ ?

ଗୋବର୍ଦ୍ଧନ—ହିଁ, ଦେଖିବ ଆସ, ଏ ମାଳା କପରି ଦୀପ୍ତିମନ୍ତ ଦେଖାଯାଉଅଛି ।

ଗୋପାଳ—( ନିକଟକୁ ଯାଇ ) ଆରେ ! ଏ ମାଳାଟି କି ସୁନ୍ଦର ଦେଖା ଯାଉଚ ! ଏଥିରେ ଏ ଗୁଡକ କଅଣ ରତ୍ନ ?

ଗୋବନ୍ଦ—ଆଉ କଅଣ ।

ଗୋପାଳ—ଏଥିରେ ଧଳା ହଳଦିଆ, ରଙ୍ଗ ନାନାପ୍ରକାର ରତ୍ନ ଅଛୁ ଲୋକେ ସିନା ରତ୍ନ ଶିଳାକୁ ଭାଙ୍ଗି ଟିକି ଟିକି କରି ଏଥିରେ ବସାଇ ଅଛନ୍ତି ?

ଗୋବନ୍ଦ—ଆହେ ! ରତ୍ନ ଶିଳା ଅନ୍ୟ ଶିଳା ପରି ବଡ ବଡ ହୁଏ ନାହିଁ, ଏହିପରି ସାନ ସାନ ହୁଏ ।

ଗୋପାଳ—ଏ ରତ୍ନମାଳାକୁ ତୁମ୍ଭେ କେଉଁଠାରୁ ପାଇଲ ?

ଗୋବନ୍ଦ—ସୀତା ଦେବୀ ତାଙ୍କ ଶ୍ୱଶୁରଙ୍କୁ ପିଣ୍ଡ ଦେଲାବେଳେ ମତେ ଦେଇଥିଲେ ।

ଗୋପାଳ—ଦଶରଥମହାରାଜା ମଲେଣିକି ?

ଗୋବନ୍ଦ—ଆଉ କଅଣ ! ରାମ, ଲକ୍ଷ୍ମଣ ଆଉ ଜାନକୀ ବନକୁ ବାହାରି ଆସିବାରୁ ସେ ଏମାନଙ୍କୁ ଝୁରି ଝୁରି ମରିଯାଇ ଅଛନ୍ତି ।

ଗୋପାଳ—ଝୁରି ଝୁରି ମରଗଲେ ! ସେ ତେବେ ଏମାନଙ୍କୁ ଅତିଶୟ ସ୍ନେହ କରୁଥିଲେ ଧନ୍ୟ ବାତ୍ସଲ୍ୟ ! ତୁମ୍ଭେ ଏ କଥା କାହାଠାରୁ ଶୁଣିଲ ?

ଗୋବନ୍ଦ—ଭରତ, ଏ କଥା ରାମଚନ୍ଦ୍ରଙ୍କ ଆଗେ କହିଲାବେଳେ ମୁଁ ଶୁଣିଥିଲି, ଏକଥା ଶୁଣି ସେମାନେ ଅନେକ ବେଳଯାଏ ବିକଳ ହୋଇ କାନ୍ଦିଥିଲେ, ତହିଁ ଉତ୍ତାରୁ ରାମ, ଲକ୍ଷ୍ମଣ ଆଉ ଜାନକୀଙ୍କୁ ସଙ୍ଗରେ ନେଇ ଭାଗୀରଥୀରେ ସ୍ନାନ କରି ଇଙ୍ଗୁଦି ଫଳ ରସରେ ପିଣ୍ଡଦେଇ ଥିଲେ; ସେତିକିବେଳେ ସୀତା ଦେବୀ ମତେ ଏ ମାଳାଟିକି ଦେଇଥିଲେ, ।

ଗୋପାଳ—ଇଙ୍ଗୁଦିଫଳର ରସରେ କାହିଁକି ପିଣ୍ଡ ଦେଲେ ? ଭାତ ରାନ୍ଧି ଦେଲେ ନାହିଁ ?

ଗୋବନ୍ଦ—ଆହେ ଶାସ୍ତ୍ରରେ ଅଛୁ, ବସୃଂ ଯଦାନ୍ନାଃ, ପିତରସ୍ତଦନ୍ନାଃ ସେମାନେତ ବନରେ ଖୁଡ ଖାଉ ନାହାନ୍ତି, ଇଙ୍ଗୁଦ ଫଳ ହେଉକା ଖାଉଅଛନ୍ତି, ସେହି ଇଙ୍ଗୁଦ ଫଳରେ ପିଣ୍ଡ ଦେଲେ ?

ଗୋପାଳ—ହଁ, ମୁଁ ଦେଖିତ, କେତେ ପିଣ୍ଡ ଅଉ ଲେପଭାଗ ବାଟ ଯାଂକ ଗଦା ଗଦା ହୋଇ ଜମା ହେଇତ ।

ଗୋବନ୍ଦ—ସେ ତନଦିନ ସବୋ ତନଗୋଟି ପିଣ୍ଡ ଦେଇଥିଲେ ତୁମ୍ଭେ ବାଟ ଯାକ ଏତେ ପିଣ୍ଡ କେଉଁଠେ ଦେଖିଲ ? ମିଥ୍ୟା-ବାଦୀ ।

ଗୋପାଳ—ମୁଁ ସ୍ୱଚକ୍ଷୁରେ ଦେଖିଛୁ କେତେ ପିଣ୍ଡ କେତେ ଲେପଭାଗ ଗଦା ଗଦା ହୋଇ ଜମା ହେଇତ ମୁଁ ମିଥ୍ୟାବାଦୀ ?

ଗୋବନ୍ଦ—ଆହେ ! ସେ ଗୁଡ଼ାକ ପିଣ୍ଡ ନୁହେଁ ହେ । ଭରତଙ୍କ ସଙ୍ଗେ ଯେଉଁ ସବୁ ହାତୀ ଘୋଡ଼ା ଅସିଥିଲେ, ଏ ଗୁଡ଼ାକ ସେମାନଙ୍କ ବିଷ୍ଠା ।

ଗୋପାଳ—ହାତୀ ଘୋଡ଼ାଙ୍କ ବିଷ୍ଠା କଅଣ ପିଣ୍ଡ ପରି ହୁଏ ?

ଗୋବନ୍ଦ— ଅଉ କଅଣ ?

ଗୋବନ୍ଦ—ଭରତ ଏତେ ହାତୀ ଘୋଡ଼ା ଘେନି ଏଠାକୁ କାହିଁକି ଅସିଥିଲେ ?

ଗୋବନ୍ଦ—ରାମଚନ୍ଦ୍ରଙ୍କୁ ଅଯୋଧ୍ୟାରେ ରଜା କରାଇବେ ବୋଲି ବନରୁ ତାହାଙ୍କୁ ସାଡମ୍ବରେ ଫେରାଇ ନେବାକୁ ଅସିଥିଲେ !

ଗୋପାଳ—ରାମ ଲକ୍ଷ୍ମଣ ଜାନକୀ ଅଯୋଧ୍ୟାକୁ ଫେରିଗଲେ ?

ଗୋବନ୍ଦ—ନା, ରାମ ଲକ୍ଷ୍ମଣ ଜାନକୀ ଦଣ୍ଡକାରଣ୍ୟକୁ ଗଲେ, କେବଳ ଭରତ ରାମଚନ୍ଦ୍ରଙ୍କ ପହୁକଠାଉ ନେଇ ଅଯୋଧ୍ୟାକୁ ଫେରିଗଲେ ।

ଗୋପାଳ—ରାମଚନ୍ଦ୍ରଙ୍କ ପହୁକଠାଉ କାହିଁକି ଘେନିଗଲେ ?

ଗୋବନ—ତାହାଙ୍କ ପିତା ରାଜାଥିଲେ ସେ ମରଯାଇ ଅଛନ୍ତି, ଏ ହେତୁ ରାଜ୍ୟ ଅରାଜକ ହୋଇଅଛି, ଭରତ ରାଜା ହେବାକୁ ନାହିଁ କଲେ, ରାମଚନ୍ଦ୍ର ଫେରି ଯିବାକୁ ନାହିଁକଲେ ଅଉ ରାଜା କଏ ହେବ ?

ଗୋପାଳ—ରାମଚନ୍ଦ୍ରଙ୍କ ଠାରୁ କଅଣ ରାଜା ହେବ ?

ଗୋବନ—ହଁ, ଏକପ୍ରକାର ରାଜା ହେବ ନାହିଁ କଅଣ !

ଗୋପାଳ—କଠାଉ ରାଜା ହୋଇ କଅଣ କରିବ ?

ଗୋବନ—ଅହେ ! ସେମାନଙ୍କ ମଧ୍ୟରେ ଏହି କଥା ସ୍ଥିର ହୋଇଅଛି ଯେ, ରାମଚନ୍ଦ୍ର ବନରୁ ଫେରି ଯିବା ଯାଏ ଭରତ ରାମଚନ୍ଦ୍ରଙ୍କ ପାଦୁକଠାଉ ସିଂହାସନରେ ରଖି ନିଜେ ରାମଚନ୍ଦ୍ରଙ୍କ ପ୍ରତିନିଧି-ସ୍ୱରୂପ ରାଜକାର୍ଯ୍ୟ ବୁଝିବେ ।

ଗୋପାଳ—ଯାହା ହଉ ଏମାନଙ୍କ ହେତୁରୁ ଆମ୍ଭେମାନେ ଅନେକ ଦିନ ଅନଧ୍ୟୟନ ଚନ୍ଦ ପାଇଲଁ, କାଲିଠାରୁ ପୂର୍ବ ପଢ଼ା-ପଢ଼ି ଲାଗିବ ?

ଗୋବନ—ନାହିଁ, କାଇଁ, ପରଦିନ ମଧ୍ୟ ପଢ଼ାପଢ଼ି ହୋଇ ପାରିବ ନାହିଁ ?

ଗୋପାଳ—କାହିଁକି ?

ଗୋବନ—ଭରତ ଅନେକ ସୈନ୍ୟ ଘେନି ଏଠାକୁ ଆସିଥିବାରୁ ଏସ୍ଥାନ ଅପରିଷ୍କୃତ ହୋଇ ଯାଇଛି, ଏ ହେତୁରୁ ଗୁରୁ ଆଜ୍ଞା କରି ଅଛନ୍ତି, କାଲି ଅନ୍ୟତ୍ର ପରିଷ୍କୃତ ସ୍ଥାନ ଦେଖି କୁଟୀର ନିର୍ମାଣ କରି ଯାଇ ରହିବାକୁ ହେବ । ଚାଲଯିବା, ଆମ୍ଭ ପୋଥି ପତ୍ର ସବୁ ସଜାଇ କରି ରଖିଦେବା ।

ଗୋବନ—ହଉ ଚାଲ, ମୋ ପୋଥିପତ୍ର ଗୁଡ଼ିକ ଏଣେ ତେଣେ ପଡ଼ିଛି ହଜିଯିବ ।

( ଉଭୟଙ୍କର ପ୍ରସ୍ଥାନ । ) ଅଙ୍କାବତାର ।

# ଦ୍ୱିତୀୟ ଅଙ୍କ ।

ଏକଜଣ ରାକ୍ଷସ ବସି ମଦ ଖାଉଥିବା ।

ଅନ୍ୟ ଏକଜଣ ରାକ୍ଷସ—(ପ୍ରବେଶ ହୋଇ) ଅରେ ଭାଇ ? ଶୁଣିଲୁଣି ଆଜ ଅମ୍ଭ ମହାରାଜା କେଉଁଠାରୁ ଗୋଟିଏ ମାନବୀ ସୁନ୍ଦରୀ ସ୍ତ୍ରୀ ଆଣି ଅଛନ୍ତି ।

୧ମ ରାକ୍ଷସ—ଅରେ ମଦ ଖାଇବୁ ଆ, ମୁଁ ଜାଣିଚି ଅମ ମହାରାଜ ଏ ସ୍ତ୍ରୀଟାକୁ ଦଣ୍ଡାକାରଣ୍ୟରୁ ଚୋରି କରି ଆଣି ଅଛନ୍ତି ।

୨ୟ ରାକ୍ଷସ— (ମଦ ଖାଇ ବସି) ଭାଇ ? ସେ କାହା ମାଇପ ? ଦଣ୍ଡକାରଣ୍ୟକୁ କାହିଁକି ଆସିଥିଲା ?

୧ମ ରାକ୍ଷସ—ଅରେ ! ସେ ଅଯୋଧ୍ୟା ମହାରାଜା ଦଶରଥ ପୁଅ ରାମ ମାଇପ, ଦଶରଥ ରାମକୁ ବନକୁ ଛଡ଼ି ଦେବାରୁ ସେ ମାଇପ ସେଥିନ ଦଣ୍ଡକାରଣ୍ୟକୁ ଆସିଥିଲା ।

୨ୟ ରାକ୍ଷସ—(ମଦପିଇ) ଅମ ମହାରାଜ ତାକୁ ମାଇପ କରିବେ ନା ପଲାଉ କରି ଖାଇବେ ?

୧ମ ରାକ୍ଷସ—ମୁଁ ଶୁଣିଚି ତାକୁ ମାଇପ କରିବାକୁ ଆଣିଅଛନ୍ତି ।

୨ୟ ରାକ୍ଷସ—ତେବେ ତାକୁ ଉଆସ ଭିତରକୁ ନ ନେଇ ଅଶୋକ ତୋଟାରେ କାହିଁକି ରଖି ଅଛନ୍ତି ?

୧ମ ରାକ୍ଷସ—ଅରେ ! ମାଇପ ହବାକୁ ନାହିଁ କରୁଛି ।

୨ୟ ରାକ୍ଷସ—ନାହିଁ କରୁଚି ? ମହାରାଜା ତାକୁ ଲୁଛ୍କି ପରି ଆକ୍ରମଣ କରୁ ନାହାନ୍ତି ! କାହିଁକି ?

୧ମ ରାକ୍ଷସ—(ହସି)ଅରେ ! ଅମମହାରାଜାଙ୍କୁ ଶାପ ଅଛି ସେ ବଳାତ୍କାରେ କାହାରକୁ ମାଇପ କରି ପାରିବେ ନାହିଁ ।

୨ୟ ରାକ୍ଷସ – ତେବେ ଚୋରି କରି ଆଣିଲେ କାହିଁକି ?

୧ମ ରାକ୍ଷସ—ଅରେ ? ରାମସଙ୍ଗେ ଲକ୍ଷ୍ମଣ ବୋଲି ଗୋଟିଏ ଭାଇ ଅଛିତ, ସେ ଅମ୍ଭ ମହାରାଜାଙ୍କ ଭଉଣୀ ସୂର୍ପଣଖାଙ୍କର ନାକ କାନ କାଟି ପକାଇଚ, ଆଉ ରାମ, ଦଣ୍ଡକାରଣ୍ୟରେ ଥିବା ଅମ ମହାରାଜାଙ୍କର ଚଉଦ ହଜାର ରାକ୍ଷସ ସୈନ୍ୟଙ୍କୁ ମାରି ପକାଇଚ ।

୧ମ ରାକ୍ଷସ—ତେବେ ଅମ ମହାରାଜା ତା ଘଇତା ଦଅରଙ୍କୁମାରି ତାକୁ ଅଣି ଅଛନ୍ତି ?

୨ୟ ରାକ୍ଷସ—ନା, ତାକୁ ମାରି ଅଣି ନାହାନ୍ତି । କହୁଛ ପରା ତାକୁ ଚୋରି କରି ଅଣି ଅଛନ୍ତି ବୋଲି ।

୧ମରାକ୍ଷସ—କପରି ଚୋରି କରି ଅଣିଲେ । ତା ଘଇତା ଦଅର ଦେଖି ପାରିଲେ ନାହିଁ ।

୨ୟ ରାକ୍ଷସ—ଅମ.ମହାରାଜା ତାକୁ ମାୟାରେ ଚୋରି କରି ଅଣି-ଅଛନ୍ତି ।

୧ମ ରାକ୍ଷସ—କପରି ମାୟା କଲେ ? ( ମଠ ଚିଇତା )

୨ୟ ରାକ୍ଷସ—ବୁଢ଼ା ମାରିଚକୁ ମାୟାରେ ସୁନା ହରଣ କରି ତାଙ୍କ କୁଟୀର ପାଖ ବନରେ ଚରିବାକୁ ଛାଡିଦେଲେ, ତା ଘଇତା ଦଅର ନେଉଇ ତାକୁ ଅଣିବାକୁ ଗୋଡାଇ ଗଲାରୁ ଅମ ମହାରାଜା ତା ମାଇପକୁ ଏଣୁ ଚୋରି କରି ଘେନି ଅସିଲେ ।

୧ମ ରାକ୍ଷସ—ମଣିଷ ଗୁଡ଼ାକ ନବୁଝିଥିଯ୍ୟା, ସୁନାରେ କୁଆଡ଼ିଁ ହରଣ ଅଛି ? ମାୟା ହରଣ ବୋଲି ଜାଣି ପାରିଲେ ନାହିଁ ।

୨ୟ ରାକ୍ଷସ—ଅରେ । ଅପଦ ବେଳେ ଲୋକଙ୍କୁ ବୁଦ୍ଧି ଦଶେନାହିଁମ

୧ମ ରାକ୍ଷସ—ଭାଇ ! ଅସ ଦଣ୍ଡକାରଣ୍ୟକୁ ଯିବା, ସେମାନେ କଣ କରୁଥିବେ ଦେଖି ଅହିବା ।

୨ୟ ରାକ୍ଷସ—ଆଉ କଅଣ କରୁଥିବେ ? ମାଇପ ଲୋ ମାଇପ ଲୋ ବୋଲି କାନ୍ଦି କାନ୍ଦି ଏବଣ ସେବଣ ବୁଲୁଥିବେ । ହେଉ, ଅସ,

ଯିବା, ଦଣ୍ଡକାରଣ୍ୟରୁ ଯୋଡ଼େ ଗୋଟେ ଋଷି ଜଳଖିଅ କରି ଆସିବା ।    ( ରଘୁଙ୍କର ପ୍ରସ୍ଥାନ )    ଯବନିକା ।

୧ ମ ଦୃଶ୍ୟ ।

ଦଣ୍ଡାକାରଣ୍ୟରେ ରାମ ବିଷଣ୍ଣ ଭାବେ ମୁଣ୍ଡରେ ହାତ ଦେଇ ବସିଥିବା, ଲକ୍ଷ୍ମଣ ଦୁଃଖିତ ଭାବେ ଦଣ୍ଡାୟମାନ ହୋଇଥିବା ।

ଲକ୍ଷ୍ମଣ—ଆର୍ଯ୍ୟ ! ଶାନ୍ତ ହୁଅନ୍ତୁ, ବିପଦ ସମୟରେ ଏପରି ଅଧୈର୍ଯ୍ୟ ହେବା ଭଲନୁହେ, ଆସ, ଏ ପର୍ବତ ଆଉ ଅରଣ୍ୟରେ ଖୋଜିବା, ଏଥିରେ ଅନେକ ପୁଷ୍ପିତ ବୃକ୍ଷ ଦେଖାଯାଉ ଅଛି । ଅବା ବନରି ଶୋଭା ଦେଖିବାକୁ କି ଫୁଲ ଆଣିବାକୁ ସେଠାକୁ ଯାଇଥିବେ ।

ରାମ—( ସକରୁଣେ ) ବତ୍ସ ! କେତେ ବନ କେତେ ଗିରିକନ୍ଦରା ତ ଖୋଜି ଆସିଲିଣି, ଆଉ ଆମ୍ଭ ପ୍ରାଣପ୍ରିୟା ଜାନକୀ କେଉଁ ଠାରେ ଅଛନ୍ତି ? ବୋଧହୁଏ ହିଂସ୍ରଜନ୍ତୁ କି କୌଣସି ରାକ୍ଷସ ଆମ୍ଭ ଜାନକୀକୁ ଭକ୍ଷଣ କରିଅଛି, ହା କୈକେୟୀ ! ଏଥର ତୁମ୍ଭର ପାପ ମନୋରଥ ପୂର୍ଣ୍ଣହେଲା, ଏଥର ନିଷ୍କଣ୍ଟକରେ ତୁମ୍ଭ ପୁତ୍ର ଭରତକୁ ରାଜାକରି, ଆମ୍ଭମାନଙ୍କୁ ତୁମ୍ଭର ଦାସୀକରି ରଖି ପାରିବ, ବତ୍ସ ଲକ୍ଷ୍ମଣ ! ମୋ ପାଇଁ ଅଗ୍ନି ସଞ୍ଚୟ କରିଦିଅ, ମୁଁ ଅଗ୍ନି ପ୍ରବେଶ କରିବି, ଆଉ ଜାନକୀ ବିରହ ଦୁଃଖ ସହ୍ୟକରି ପାରିବ ନାହିଁ ।

ଲକ୍ଷ୍ମଣ—ଆର୍ଯ୍ୟ ! ଶୋକ ସମ୍ବରଣ କରନ୍ତୁ, ଧୈର୍ଯ୍ୟଧରି ମୋ ସଙ୍ଗରେ ଆସନ୍ତୁ, ଆସ ଦୁହେଁ ସହକାରେ ଜାନକୀଙ୍କୁ ଖୋଜିବା, ଆପଦ ସମୟରେ ଏପରି ଅଧୀର ହେବା ଆପଣଙ୍କର ସଦୃଶ ବ୍ୟକ୍ତିଙ୍କର ଉଚିତ ନୁହେ ।

ରାମ—ବତ୍ସ ! ମୋ ପରି ଅକର୍ମୀ, ଏ ପୃଥିବୀରେ ଆଉ କେହି ନାହିଁ ରାଜ୍ୟନାଶ, ବନବାସ, ପିତାମରଣ, ସୀତା ହରଣ ଏକାବେଳକେ ଘଟିଲା ! ଶୋକ ଉପରେ ଶୋକ ପଡିବାରୁ ମୁଁ ଆଉ ସହ୍ୟ କରି ପାରୁନାହିଁ ।

ଲକ୍ଷ୍ମଣ—ଆର୍ଯ୍ୟ ! ସଂସାରରେ ସୁଖ ଦୁଃଖ ଲାଗିଅଛି । ଆପଣ ଧୈର୍ଯ୍ୟ ଧରନ୍ତୁ, ଏ ନଦୀରେ ହଂସ, ସାରସ ଜଳଚର ପକ୍ଷୀମାନେ କ୍ରୀଡା କୌତୁକ କରୁଅଛନ୍ତି ଅବା ଏମାନଙ୍କ କ୍ରୀଡା କୌତୁକ ଦେଖିବାକୁ ବା ପଦ୍ମଫୁଲ ଆଣିବାକୁ ସେଠାକୁ ଯାଇଥିବେ ।

ରାମ—( ଉଠି ସକରୁଣେ ) ହଉ୍ଚାଲ ! ( କିଛିଦୂର ଯିବା )

ଲକ୍ଷ୍ମଣ—ଆର୍ଯ୍ୟ ? ଆର୍ଯ୍ୟ ! ଏଠାରେ ଦେଖିଲଣି, ଗୋଟାଏ ସୁସଜ୍ଜିତ ରଥ ଭଗ୍ନହୋଇ ପଡିଅଛି । ଆଉ ଗୋଟାଏ ବୃହତ୍‌କାୟ ପକ୍ଷୀ ରକ୍ତଲିପ୍ତ ହୋଇ ପଡି ରହିଅଛି ।

ରାମ—(କ୍ରୋଧ ସକରୁଣେ) ଲକ୍ଷ୍ମଣ ? ନିଶ୍ଚୟ ଏ ପକ୍ଷିରୂପୀ ରାକ୍ଷସ ଆମ ଜାନକୀକୁ ଭକ୍ଷଣ କରି ରକ୍ତ ଲିପ୍ତ ହୋଇ ଏଠାରେ ଶୋଇ ଅଛି, ଏହାକୁ ବିନାଶ କରିବା । (ସକ୍ରୋଧେ) ନିକଟକୁ ଯିବା

ଜଟାୟୁ—ବତ୍ସ ? ତୁମ୍ଭେମାନେ ଦଶରଥ ମହାରାଜାଙ୍କ ପୁତ୍ର ? ତୁମ୍ଭ ଦୁହିଁଙ୍କ ନାମ ରାମ ଲକ୍ଷ୍ମଣ ?

ଲକ୍ଷ୍ମଣ—ହଁ, ଆମ୍ଭେମାନେ ଦଶରଥ ମହାରାଜାଙ୍କ ପୁତ୍ର ରାମ ଲକ୍ଷ୍ମଣ ।

ଜଟାୟୁ—ଆମ୍ଭେ ତୁମ୍ଭ ପିତାଙ୍କ ମିତ୍ର, ଆମ୍ଭ ନାମ ଜଟାୟୁ, ଆମ୍ଭଙ୍କୁ ଆଉ ମାରନା, ରାବଣ ଆମ୍ଭଙ୍କୁ ମାରି ଦେଇ ଯାଇଅଛି, କେବଳ ରାବଣ ଜାନକୀକୁ ହରଣ କରି ନେଇ ଯାଇ ଥିବା ଖବର ତୁମ୍ଭଙ୍କୁ ଜଣାଇ ଦେବୁଁ ବୋଲି ଏ ପର୍ଯ୍ୟନ୍ତ ଜୀବିତ ଅଛୁ, ଦୁରାତ୍ମା, ଜାନକୀଙ୍କୁ ହରଣ କରି ନେଲାବେଳେ ଆମ୍ଭେ ତାହାର ପଥରୋଧ କରୁ, ଦେଖ, ପଶ୍ଚାଦ୍ଧାବିତ ହୋଇ ତାହାର

ଭିଥ ଭୂଇଁ ଏଠାରେ ପକାଇ ଦେଇଅଛନ୍ତି ( ସକରୁଣେ )
ବତ୍ସ୍ୟ ? ତାହାର ବଳାଧିକ୍ୟ ହେବାରୁ ସେ ଦୁରାତ୍ମା
ମୋହର ପକ୍ଷ ଦ୍ୱୟକୁ ଖଡ୍ଗରେ କାଟି, ଏଠାରେ ମତେ
ପକାଇ ଦେଇ ଜାନକୀଙ୍କୁ ପରିଜନାମୀତ ଅନ୍ୟ ଏକରଥରେ
ବସାଇ ଅକାଶ ମାର୍ଗରେ ଘେନ କାହାର ଯାଇଅଛନ୍ତି ।

ରାମ—ଆ, ହା, ହା, ଏ କଅଣ ହେଲା ! ଏହାଙ୍କର ମୃତ୍ୟୁହୋଇ
ଗଲା କି ? [ବସିଯାଇ ହାତରେ ହଲାଇ ସକରୁଣେ] ନା, ଅଉ
ଏହାଙ୍କର ପ୍ରାଣ ନାହିଁ, ହା ଦୈବ ! ସେ ଦୁରାତ୍ମାର ଘର କେଉଁ
ଦେଶରେ, କେଉଁ ଦିଗରେ ଏତିକ କହିଦେବା ଯାଏ ହେଲେ
ଏହାଙ୍କ ପ୍ରାଣ ରଖାଇ ଦେଲୁନାହିଁ ?

ଲକ୍ଷ୍ମଣ - ଆର୍ଯ୍ୟ ! ଯାହା ହେଉ, ଦେଖି ତ ଜୀବିତ ଅଛନ୍ତି, ଆସନ୍ତୁ
ଉଭୟାନ୍ତ ସହକାରେ ଏ ବନରେ ଖୋଜିବା ଏହିପରି ଖୋଜୁ
ଖୋଜୁ ନିଶ୍ଚୟ ତାହାର ସନ୍ଧାନ ମିଳିଯିବ ।

ରାମ—ବତ୍ସ ! ରାବଣ ଜାନକୀଙ୍କୁ ହରଣ କରି ନେଇ ଯାଇ ଥିବା-
କଥାସିନା ଜଣାପଡ଼ିଲା, କିନ୍ତୁ ସେ ଦୁରାତ୍ମାର ଘର କେଉଁ
ଦେଶକି କେଉଁ ଦିଗରେ ଜଣାତ ଗଲା ନାହିଁ, କେଉଁଆଡ଼େ
ଯିବା ?

ଲକ୍ଷ୍ମଣ—ଆର୍ଯ୍ୟ ! ଆପଣ ମୋ ସଙ୍ଗରେ ଆସନ୍ତୁ ବଣେ ବେଣେ
ଖୋଜିବା, ଏହିପରି ଖୋଜୁ ଖୋଜୁ ନିଶ୍ଚୟ ତାହାର ସନ୍ଧାନ
ମିଳିଯିବ ।

ରାମ—ହଉ ଚାଲ ? [କିଛିଦୂର ଯାଇଁ, ହରିଣ ଏକପଲ ଦେଖି ସକ-
ରୁଣେ] ଆହେ ହେ ହରିଣମାନେ, ରାବଣ ଜାନକୀଙ୍କୁ କେଉଁ
ଦିଗକୁ ଘେନ ଗଲା, ତୁମ୍ଭେମାନେ ଦେଖିଅଛକି ? ଏମାନେତ
କାହିଁକି ମତେ ପ୍ରତ୍ୟୁତ୍ତର ନ ଦେଇ ପଳାଉ ଅଛନ୍ତି ?

ଲକ୍ଷ୍ମଣ—ଆର୍ଯ୍ୟ ! ଏମାନେ ଊର୍ଦ୍ଧ୍ୱକୁ ଚାହିଁ ଦକ୍ଷିଣ ଅଭିକୁ ପଳାଉ ଅଛନ୍ତି, ବୋଧହୁଏ ରାବଣ ଜାନକୀଙ୍କୁ ଏହି ଦକ୍ଷିଣ ଅଭିକୁ ଘେନି ଯାଇଅଛି, ଅସ ଆମ୍ଭେ ଏହି ଦକ୍ଷିଣ ଅଭିକୁ ଯିବା ।

ନେପଥ୍ୟେ—

ଲକ୍ଷ୍ମଣ— (ନେପଥ୍ୟ ଅଭିକୁ ଚାହିଁ) ଆର୍ଯ୍ୟ ? ଆର୍ଯ୍ୟ ? ଗୋଟାଏ ଦୀର୍ଘବାହୁ ମସ୍ତକଶୂନ୍ୟ ରାକ୍ଷସ ତା ଦୁଇହାତରେ ଚାରିଆଡୁ ବନ୍ୟ-ଜନ୍ତୁମାନଙ୍କୁ ଆହରଣ କରି, ତାହାର ଉଦରରେ ଥିବା-ମୁଖରେ ଭକ୍ଷଣ କରି କରି ଏଣିକି ଆସୁଅଛି ।

ରାମ— (ଚାହିଁ) ଏ ଦୁରାତ୍ମା ରାକ୍ଷସାଧମ ଆମ୍ଭମାନଙ୍କୁ ଆକ୍ରମଣ କରିବାକୁ ଏଣିକି ଆସୁଅଛି, ଏହାକୁ ଅଗ୍ନି ବାଣରେ ଶୀଘ୍ର ଦଗ୍ଧକର ।

ଲକ୍ଷ୍ମଣ—ଯେ ଆଜ୍ଞା (ଶର ସନ୍ଧାନର ଅଭିନୟ)

ନେପଥ୍ୟେ—(ଭୟଙ୍କର ଶବ୍ଦ)

ଦିବ୍ୟ ପୁରୁଷର ପ୍ରବେଶ ।

ପୁରୁଷ—ବୀରଦ୍ୱୟ ! ତୁମ୍ଭେଦୁହେଁ ଅଯୋଧ୍ୟା ମହାରାଜ ଦଶରଥଙ୍କ ପୁତ୍ର ? ତୁମ୍ଭ ଦୁହିଁଙ୍କ ନାମ ରାମ ଲକ୍ଷ୍ମଣ ?

ଲକ୍ଷ୍ମଣ—ହିଁ, ଆମ୍ଭେ ସ୍ୱର୍ଗୀୟ ଦଶରଥ ମହାରାଜାଙ୍କ ପୁତ୍ର ରାମ ଲକ୍ଷ୍ମଣ

ପୁରୁଷ—ଆପଣ ଦୁହିଁଙ୍କୁ ପ୍ରଣାମ, ଆପଣଙ୍କ ହେତୁରୁ ଆଜ ଆମ୍ଭେ ମୁକ୍ତହେଲୁଁ, ଆପଣ ଆମ୍ଭର ସେ ଯେଉଁ କୁତ୍ସିତ ଦେହ ଦଗ୍ଧ-କଲ, ତାହା ଆମ୍ଭର ପ୍ରକୃତ ଦେହନୁହେ, ପୂର୍ବେ ଇନ୍ଦ୍ର ଚନ୍ଦ୍ରଙ୍କ ପରି ଆମ୍ଭର କାନ୍ତି ବିଶିଷ୍ଟ ଦେହଥିଲା, ଆମ୍ଭେ ଗନ୍ଧର୍ବ, ପୂର୍ବେ କୌତୁକରେ ନାନା ପ୍ରକାର ଦେହ ଧାରଣ କରି ଋଷିମାନଙ୍କୁ ଭୟ ପ୍ରଦର୍ଶନ କରୁଥିଲୁଁ, ଦିନେ ସ୍ଥୂଲଶିରାମୁନି ଫଳମୂଳ ଗୁଡାଏ ଆହରଣକରି ରଖିଥିଲେ, ଆମ୍ଭେ ଏହି କୁତ୍ସିତ କବନ୍ଧ

ଦେହ ଧାରଣ କରି ତାହାଙ୍କର ସେଗୁଡ଼ିକ ନେଇ ଯାଉଥିଲୁଁ ।
ଏଥିରେ ଋଷି କ୍ରୁଦ୍ଧହୋଇ ଆମ୍ଭଙ୍କୁ ଶାପଦେଇ କହିଥିଲେ
ରେ ଦୁର୍ବୁଦ୍ଧି ! ତୁ ଏହି-କୁତ୍ସିତ କବନ୍ଧ ଦେହ ଧାରଣ କରି
ଚିରକାଳ ରହିଥା, ଆମ୍ଭେ ଅତିଶଯ୍ୟ ହୋଇ ନିଜକୃତ
ଅପରାଧ ନିମିତ୍ତ ମୁନିଙ୍କୁ କ୍ଷମା ପ୍ରାର୍ଥନା କରିବାରୁ ସେ ସଦୟ
ହୋଇ ଆମ୍ଭଙ୍କୁ କହିଥିଲେ, ଅଯୋଧ୍ୟା ମହାରାଜାଙ୍କ ପୁତ୍ର
ରାମ ଲକ୍ଷ୍ମଣ ତୋହର ଏ କୁତ୍ସିତ ଦେହକୁ ଦଗ୍ଧକଲେ ଉ
ମୁକ୍ତିଲାଭ କରିବୁ, ଆମ୍ଭେ ଆଜି ସେଇତ ତୁମ୍ଭ ଦୁହିଙ୍କୁ ଦେଖିଲୁ
ଏବ ପାପରୁ ମୁକ୍ତହେଲୁଁ, ମହାଶୟ ! ଆପଣ ଦୁହେଁ ତ ରାଜ-
ପୁତ୍ର, ଜଟା ବଲ୍କଲ ଧାରଣ କରି ଏ ଭୟଙ୍କର ବନକୁ କାହିଁକି
ଆସି ଅଛନ୍ତି ?

ଲକ୍ଷ୍ମଣ—ଭଦ୍ର ! ଏହାଙ୍କ ବିମାତା କୈକେୟୀ ଦେବୀ ଏହାଙ୍କ ରାଜ୍ୟା-
ଭିଷେକରେ ବ୍ୟାଘାତ ଜନ୍ମାଇ ଏହାଙ୍କୁ ବନବାସ ଦେଇ
ଅଛନ୍ତି, ସେ ହେତୁରୁ ଏ ମହାଶୟ ଆମ୍ଭଙ୍କୁ ଆଉ ଏହାଙ୍କ
ଧର୍ମ ପତ୍ନୀଙ୍କୁ ସଙ୍ଗରେ ନେଇ ଏ ବନକୁ ଆସିଥିଲେ, ରାବଣ
ନାମରେ ଗୋଟିଏ ରାକ୍ଷସ ଏହାଙ୍କ ଧର୍ମ ପତ୍ନୀକୁ ଚୋରିକରି
ନେଇ ଯାଇଛନ୍ତି, ତାହାଙ୍କ ଅନୁସନ୍ଧାନରେ ଆମ୍ଭେ ଦୁହେଁ ଏ
ବନରେ ବୁଲୁଅଛୁଁ, ତୁମ୍ଭେ ତାହାଙ୍କୁ ଚିହ୍ନ ? ତା ଘର କେଉଁ
ଦେଶରେ ଜାଣ ?

ପୁରୁଷ—ଆମ୍ଭେ କେବଳ ତାହାର ନାମ ଶୁଣିଅଛୁଁ, ସେ ରାକ୍ଷସ ମାନ-
ଙ୍କର ରାଜା ବୋଲି ସେ ପରଦାରାପହାରୀର ଘର କେଉଁ ଦେଶରେ
ଜାଣୁନାହିଁ, ତୁମ୍ଭେ ବର୍ତ୍ତମାନ ବିପନ୍ନ ଆଉ ନିଃସହାୟ ହୋଇ
ଅଛ, କୌଣସି ମହତ୍ଲୋକର ସାହାଯ୍ୟ ନେଇ ତାହାଙ୍କୁ
ଉଦ୍ଧାର କରିବାକୁ ଯତ୍ନକର ।

ଲକ୍ଷ୍ମଣ—ଆମ୍ଭେ ଏ ନିର୍ଜନ ବନରେ କାହାରି ସାହାଯ୍ୟ ନେବୁଁ ?

ପୁରୁଷ—ତୁମ୍ଭେ ଯାଇଁ କପିରାଜ ସୁଗ୍ରୀବଙ୍କର ସାହାଯ୍ୟ ନିଅ, ସେ
ବହୁଦର୍ଶନ ବଳରେ ସମସ୍ତ ରାକ୍ଷସ ମାନଙ୍କର ବାସସ୍ଥାନ
ଜାଣନ୍ତି, ସେ ଚତୁର୍ଦ୍ଦିଗକୁ ବାନରମାନଙ୍କୁ ପଠାଇ ତାହାଙ୍କର
ସନ୍ଧାନ ଠିକ କରି ଦେଇ ପାରନ୍ତି ।

ରାମ—ଭଦ୍ର ! ସେ ମହାତ୍ମା ଏ ବନରେ କେଉଁଠାରେ ଅଛନ୍ତି ?
ଆମ୍ଭେ ତାହାଙ୍କ ପ୍ରତି କପରି ବ୍ୟବହାର କଲେ ସେ ଆମ୍ଭପ୍ରତି
ପ୍ରସନ୍ନ ହେବେ ?

ପୁରୁଷ—ଏଠାରୁ ଅଳ୍ପ ଦୂରରେ ପମ୍ପାସର ନିକଟରେ ଋଷ୍ୟମୂକ
ବୋଲି ଗୋଟିଏ ପର୍ବତ ଅଛି, ସେଠାରେ ସେ କେତେଗୋଟି
ବାନର ସଙ୍ଗ ବାସ କରୁ ଅଛନ୍ତି, ସେ ସୂର୍ଯ୍ୟଙ୍କ ପୁତ୍ର, ବାଳିଙ୍କ
ଭ୍ରାତା ଏବଂ ଅତିଶୟ ବୁଦ୍ଧିମାନ୍, ଦୃଢ ପ୍ରତିଜ୍ଞ ଆଉ ସୁଧୀର
ଅଟନ୍ତି, ତୁମ୍ଭେ ତାହାଙ୍କ ନିକଟକୁ ଯାଇ ତାହାଙ୍କ ସହିତ
ମିତ୍ରତା ସ୍ଥାପନ କର, ବାନର ବୋଲି ତାହାଙ୍କୁ ହତାଦର
କରିବ ନାହିଁ, ରାବଣ ତୁମ୍ଭ ପତ୍ନୀଙ୍କୁ ସୁମେରୁ ଶିଖରରେ ବା
ପାତାଳରେ ନେଇ ରଖିଥିଲେ ସୁଦ୍ଧା ଏ କପିରାଜ ତାହାଙ୍କର
ସନ୍ଧାନ ଠିକ କରିଦେଇ ପାରନ୍ତି ।

ରାମ—ସେ ପମ୍ପାସର ଏ ବନର କେଉଁଠାରେ ଅଛି ଆମ୍ଭଙ୍କୁ
ତେବେ କହି ଦିଅନ୍ତୁ ।

ପୁରୁଷ—(ହାତ ଦେଖାଇ) ତୁମ୍ଭେ ଏହିବାଟେ ବନ ମଧ୍ୟକୁ ବାହାରି
ଯିବ । ଯାଉଁଯାଉଁ ବାଁ ହାତ ସେ ସରଟିକୁ ଦେଖିବାକୁ ପାଇବ ।

ଲକ୍ଷ୍ମଣ—ସେ ପମ୍ପାସର କପରି ?

ପୁରୁଷ ।——

ରାଗ—ଭୈରବ, ତାଳ—ଝୁଲା ।

କ ବର୍ଣ୍ଣିବ ପମ୍ପା ଶୋଭା ହେ ରାଜ କୁମର,
ଏ ଦୁଃଖ ଦୂର ହୋଇବ ଦେଖିଲେ ତୁମ୍ଭର । ଘୋଷା ।

ସ୍ଫଟିକ ପରି ତା ଜଳ ସ୍ୱଚ୍ଛ ଅତି ସୁଶୀତଳ
ପଦ୍ମଗନ୍ଧ ସୁନିର୍ମଳ ଅତ୍ୟନ୍ତ ଗମ୍ଭୀର । ୧ ।
ତାର କୂଳରେ ବର୍ଦ୍ଧିତ ପୁଷ୍ପିତ ଲତା ଜଡ଼ିତ
ବୃକ୍ଷେ ଜଳେ ପୁଷ୍ପବୃଷ୍ଟି କରନ୍ତି ପ୍ରଚୁର । ୨ ।
ହଂସ କ୍ରୌଞ୍ଚ ପକ୍ଷିଗଣ ସେ ଜଳରେ ସନ୍ତରଣ
କରି କରନ୍ତି ହେ ଗାନ ଅତି ମନୋହର । ୩ ।
ଚାନକାଖି ପକ୍ଷିଗଣ କୂଳ ବୃକ୍ଷରେ ବସିଣ
ନାନା ସ୍ୱରେ ଗାଉଥାନ୍ତି ଗାନ ସୁମଧୁର । ୪ ।
କୁମୁଦ ପଦ୍ମ କହ୍ଲାର ଜଳଜ ପୁଷ୍ପ ପ୍ରଚୁର
ତହିଁ ଫୁଟି ପ୍ରକାଶନ୍ତି ଶୋଭା ମନୋହର । ୫ ।

ଦିନ ଅବସାନ ହେଲାଣି ଆଜି ଏ ଗିରି କନ୍ଦରରେ ବିଶ୍ରାମ କରି, କାଲି ପମ୍ପାର ଶୋଭା ଦେଖି ଋଷ୍ୟମୂକ ପର୍ବତକୁ ଯାଇ ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିବ, ଆମ୍ଭେ ଦିବ୍ୟ ଲୋକକୁ ଯାଉଅଛୁଁ,

ରାମ—ବତ୍ସ ଲକ୍ଷ୍ମଣ ! ଆସ ଏ ଗିରି ଗୁହାରେ ବିଶ୍ରାମ କରିବା ।
ଲକ୍ଷ୍ମଣ—ଆଜ୍ଞା ଆସିବା ହୁଅନ୍ତୁ ।। ( ଉଭୟଙ୍କର ପ୍ରସ୍ଥାନ )

ଇତି ଦ୍ୱିତୀୟ ଅଙ୍କ ।

---

ଋଷ୍ୟମୂକ ପର୍ବତରେ ସୁଗ୍ରୀବ ଆଉ ଗୋଟିଏ ବାନର ।

ବାନର—ମହାରାଜ ! ଆପଣ ଆଜି କାହିଁକି ଏପରି ବିଷଣ୍ଣ ଦେଖାଯାଉ ଅଛନ୍ତି ?

ସୁଗ୍ରୀବ—ଆଜି ଆମ୍ଭ ଜ୍ୟେଷ୍ଠଭ୍ରାତା ବାଳି ଆମ୍ଭ ଅଙ୍ଗ ପ୍ରତ୍ୟଙ୍ଗ କାମୁଡ଼ି ଛିନ୍ନ ଭିନ୍ନ କରି ପକାଇ ଅଛନ୍ତି ।

ବାନର—ଏ ଋଷ୍ୟମୂକ ପର୍ବତକୁ ଆସିଲେ ତାହାଙ୍କ ମସ୍ତକ

ସହସ୍ରଧା ବିଦୀର୍ଣ୍ଣ ହୋଇଯିବ ବୋଲି ପରା ଋଷି ତାହାଙ୍କୁ ଶାପ ଦେଇଥିଲେ ? ସେ ଏଠାକୁ କିପରି ଆସିଲେ ?

ସୁଗ୍ରୀବ—ସେ ଏଠାକୁ ଆସି ନ ଥିଲେ, ଆମ୍ଭେ ଏ ନିକଟବର୍ତ୍ତୀ ବନରେ ସୁପକ୍ୱ ବୃକ୍ଷ ଫଳମାନ ଝୁଲି ଥିବାର ଦେଖି, ଲୋଭ ସମ୍ବରଣ କରି ନ ପାରି ଖାଇବାକୁ ଯାଇଥିଲୁଁ, ସେ କିପରି ଜାଣି ପାରି ସକ୍ରୋଧେ ସେଠାକୁ ଆସି ଆମ୍ଭଙ୍କୁ ଏପରି ଛିନ୍ନଭିନ୍ନ କରି ପକାଇ ଅଛନ୍ତି, ଆମ୍ଭେ କୌଶଳରେ ତାହାଙ୍କ ହସ୍ତରୁ ମୁକ୍ତି ଲାଭ କରି ଏଠାକୁ ପଳାଇ ଆସିଲୁ ବୋଲି ଜୀବିତ ଅଛୁଁ, ନୋହିଲେ ନିଶ୍ଚୟ ସେ ଆମ୍ଭଙ୍କୁ ଅଳ୍ପ ପ୍ରାଣରେ ବିନାଶ କରି ଥାଆନ୍ତେ ।

ହନୁମାନ— ( ପ୍ରବେଶହୋଇ ) ମହାରାଜ ! ଦେବ କୁମାର ତୁଲ୍ୟ ଦୁଇଗୋଟି ଜଟା ବଳ୍କଳଧାରୀ ସଶସ୍ତ୍ର ଯୁବକ କାହିଁକି ଏ ବନରେ ବୁଲୁ ଅଛନ୍ତି ?

ସୁଗ୍ରୀବ—ସଶସ୍ତ୍ର ଦୁଇଗୋଟି ଯୁବକ ବୁଲୁ ଅଛନ୍ତି ।

ହନୁମାନ—ଆଜ୍ଞା,

ସୁଗ୍ରୀବ—ଆମ୍ଭ କ୍ରୂରଭ୍ରାତା ଆମ୍ଭଙ୍କୁ ବିନାଶ କରାଇବେ ବୋଲି ଏ ଦୁହିଁଙ୍କୁ ପଠାଇ ଅଛନ୍ତି କି ?

ହନୁମାନ—ଭୟ କରନ୍ତୁ ନା, ଏ ଦୁହେଁ କାହାକୁ ଦୁଃଖିତଭାବେ ଖୋଜିଲା ପରି ଦେଖାଯାଉ ଅଛନ୍ତି ।

ସୁଗ୍ରୀବ—କେ ଜାଣେ ? ଆମ୍ଭଙ୍କୁ ଅବା ଖୋଜୁଥିବେ ? ତୁମ୍ଭେ ଏହି-କ୍ଷଣି ଯାଇ ବୁଝି ଆସ; କାହିଁକି ସେମାନେ ଏ ନିବିଡ ବନରେ ବୁଲୁ ଅଛନ୍ତି ?

ହନୁମାନ— ଯେ ଆଜ୍ଞା ( ପ୍ରସ୍ଥାନ )

ସୁଗ୍ରୀବ—ବାନର ! ଆସ ପର୍ବତ ଶିଖର ଆରୋହଣ କରିବା ।

ବାନର—ଆଜ୍ଞା, ଆସିବା ହେଉନ୍ତୁ । ( ସମସ୍ତଙ୍କରପ୍ରସ୍ଥାନ ) ଋଷ୍ୟମୂକ

## ୧ ମ ଦୃଶ୍ୟ ।

ବନ ମଧ୍ୟରେ ରାମ ଏବଂ ଲକ୍ଷ୍ମଣ ।

ରାମ—ବତ୍ସ ! ଲକ୍ଷ୍ମଣ ! ଆଜ ଆମ୍ଭେ ସପ୍ତଶାଳା ତୀର୍ଥରେ ସ୍ନାନ ତର୍ପଣାଦ କରିବାରୁ, ମନ ଆନନ୍ଦିତ ହେଉଛୁ, ବୋଧ ହେଉଅଛୁ ଆମ୍ଭର ଏଣିକି ଶୁଭ ହେବ, ଆସ ଶୀଘ୍ର ଯାଇ କପିର ମହାତ୍ମା ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିବା ।

ଲକ୍ଷ୍ମଣ—ଆଜ୍ଞା, ଆସିବା ହୁଅନ୍ତୁ ( ବନରେ ଗାଇ )——

ଦେଖ ଏାର କି ସୁନ୍ଦର ଦିଶେ ଏ ବନ ।
ପଲ୍ଲବିତ ହୋଇ ହରୁଅଛଇ ମନ । (ଘୋଷା)
ହୋଇଥିବାରୁ ବସନ୍ତ, ବୃକ୍ଷମାଳ ପୁଷ୍ପବନ୍ତ,
ଗାନକାରୀ ପକ୍ଷିମାନେ କରନ୍ତି ଗାନ । ୧ ।
ଲୁଚି ଏ ବନ ମଧ୍ୟରେ, ରହି ରହି ଥରେ ଥରେ,
କୋକିଲ ଶୁଣ ଦେଉଛୁ ମଧୁର ସ୍ୱନ । ୨ ।
ଦକ୍ଷିଣ ଦିଗୁଁ ସମୀର ବହୁଅଛୁ ଧୀର ଧୀର,
ପୁଷ୍ପମାନଙ୍କ ସୁଗନ୍ଧ କରି ବହନ । ୩ ।
ଏ ଅଟେ ଶୋଭା ଭଣ୍ଡାରି, ମନୁ ଦୁଃଖ ହୁଏ ଦୂର,
ଦେଖି ଦେଖି ଆସ କରିବା ହେ ଗମନ । ୪ ।

ରାମ—ବତ୍ସ ! ଜାନକୀ ବିରହ ଘଟିଥିବାରୁ ଏ ବନର ଶୋଭା ଦେଖି ଆମ୍ଭମନ ଅଧିକ ଦୁଃଖିତ ହେଉଅଛୁ, ଏକୁସୁମ ସୁବାସିତ ମଳୟ ପବନ ଆମ୍ଭଙ୍କୁ ଅଗ୍ନି ଶିଖାପରି ବୋଧ ହେଉଅଛୁ ।

ଲକ୍ଷ୍ମଣ—ଆର୍ଯ୍ୟ ! ଦେଖନ୍ତୁ, ଏଇଟି ପମ୍ପାସର ହେବ, ସେ ପ୍ରକୃଷ୍ଟ କହିବା ମତେ ପୁଷ୍ପିତ ଲତାଜଡିତ ବୃକ୍ଷମାନେ ଏ ସରମଧ୍ୟକୁ ପୁଷ୍ପ ବୃଷ୍ଟି କରୁ ଅଛନ୍ତି ।

ରାମ—( ଗହଁ ) ଅହା ! ଏ ସରୁଟି କିପରି ଦେଖା ଯାଉଅଛୁ ? କେତେ ପଦ୍ମ ଫୁଟିଅଛୁ ! ଏହାର ସୂକ୍ଷ୍ମ ବାଲୁକାମୟ କୂଳପ୍ରଦେ-

ଯରେ କେତେ ହରଣ ହୃଷ୍ଟମନରେ ବୁଲୁ ଅଛନ୍ତି । କେତେ ହର୍ଷୋନ୍ମତ୍ତ ପକ୍ଷୀ ଏହା କୂଳରେ ଥିବା ବୃକ୍ଷମାନଙ୍କରେ ବସି ମନୋହର ଭାବରେ କୋଳାହଳ କରୁଅଛନ୍ତି ।

ହନୁମାନ୍—( ପ୍ରବେଶ ହୋଇ ) ଆପଣ ଦୁହେଁ କଏ ? କାହିଁକି ଏ ବନକୁ ଆସି ଅଛନ୍ତି ? କାହିଁକି ଘନ ଘନ ନିଶ୍ୱାସ ପକାଇ ଦୁଃଖିତ ଭାବରେ ଏ ପମ୍ପାର ତରୁଲତାମାନଙ୍କୁ ନିରୀକ୍ଷଣ କରୁ- ଅଛନ୍ତି ?

ରାମ—ବତ୍ସ ! ଦେଖ, ଏ ବାନର କିପରି ମନୁଷ୍ୟପରି କଥା କହୁ- ଅଛନ୍ତି ?

ହନୁମାନ୍— ବୀରଦ୍ୱୟ ! ଆମ୍ଭଙ୍କୁ ସାମାନ୍ୟ ବାନର ବୋଲି ମନେ- କରନ୍ତୁ ନାହିଁ, ଅମ୍ଭେ ପବନଙ୍କ ପୁତ୍ର, ଅଞ୍ଜନାଙ୍କଗର୍ଭରୁ ଜନ୍ମିଅଛୁଁ ଆମ୍ଭନାମ ହନୁମାନ୍, ଅମ୍ଭେ କପୀଶ୍ୱର ସୁଗ୍ରୀଙ୍କ ମନ୍ତ୍ରୀ, ଏ କ୍ଷୁଦ୍ର ଦେହକୁ ପର୍ବତାକାରରେ ବର୍ଦ୍ଧିତ କରିପାରୁଁ, ବୀରଦ୍ୱୟ ! ତୁମ୍ଭେ ଦୁହେଁତ ରାଜପୁତ୍ରପରି ଦେଖା ଯାଉଅଛ, ଜଟା ବଲ୍କଳ ଧାରଣ କରି କାହିଁକି ଏ ଭୟଙ୍କର ବନରେ ବୁଲୁଛ ?

ଲକ୍ଷ୍ମଣ—ହଁ, ଅମ୍ଭେ ଦୁହେଁ ରାଜପୁତ୍ର, ବିମାତା ଆମ୍ଭ ଏ ଅଗ୍ରଜଙ୍କର ରାଜ୍ୟାଭିଷେକରେ ବ୍ୟାଘାତ ଜନ୍ମାଇ ଏହାଙ୍କୁ ବନ- ବାସ ଦେଇ ଅଛନ୍ତି, ସେ ହେତୁରୁ ଏ ମହାଶୟ ଆମ୍ଭଙ୍କୁ ଆଉ ଏହାଙ୍କ ଧର୍ମପତ୍ନୀଙ୍କୁ ସଙ୍ଗରେ ଘେନ ବନକୁ ଆସିଥିଲେ, ରାବଣ ବୋଲି ଗୋଟିଏ ରାକ୍ଷସ ଏହାଙ୍କ ଧର୍ମ ପତ୍ନୀଙ୍କୁ ଚୋର- କରି ଘେନିଯାଇ ଅଛି, ତାହାଙ୍କୁ ସେ ରାକ୍ଷସ ହସ୍ତରୁ ଉଦ୍ଧାର କରିବା ପାଇଁ ତୁମ୍ଭ ରାଜା ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିବାକୁ ଏଠାକୁ ଆସିଅଛୁଁ, ସେ ମହାତ୍ମାଙ୍କ ସଦ୍‌ଗୁଣ ଆଉ ସତ୍ସ୍ୱଭାବର ପରିଚୟ ଅମ୍ଭେ କବନ୍ଧଙ୍କଠାରୁ ପାଇ-

ଅଛୁଁ, ସେ ମହାତ୍ମା କେଉଁଠାରେ ଅଛନ୍ତି ଆମ୍ଭ ଦୁହିଙ୍କୁ ସେଠାକୁ ଘେନିଚାଲ ।

ହନୁମାନ୍—ବୀର ! ସେ ମଧ ଏ ମହାତ୍ମାଙ୍କପରି ବିପନ୍ନ ଅଛନ୍ତି, ତାହାଙ୍କ ଭ୍ରାତା ବାଳି ତାହାଙ୍କ ଧର୍ମପତ୍ନୀକୁ ବଳପୂର୍ବକ ନେଇ ତାହାଙ୍କୁ ରାଜ୍ୟରୁ ତଡ଼ିଦେଇ ଅଛନ୍ତି, ସେ ମଧ ତାହାଙ୍କ ଭାର୍ଯ୍ୟାଙ୍କୁ ବାଳିଙ୍କ ହସ୍ତରୁ ଉଦ୍ଧାର କରିବାକୁ ଆପଣମାନଙ୍କ ସଦୃଶ ବୀର ପୁରୁଷଙ୍କ ସାହାଯ୍ୟପ୍ରାର୍ଥୀ ହୋଇ ଅଛନ୍ତି, ଆପଣ ଦୁହେଁ ଏଠାରେ ଥାଇ ପମ୍ପାର ଶୋଭା ଦେଖୁଥାନ୍ତୁ, ଆମ୍ଭେ ଏହିକ୍ଷଣି ତାହାଙ୍କୁ ସଙ୍ଗରେ ଘେନି ଏଠାକୁ ଆସୁଅଛୁଁ ।

( ପ୍ରସ୍ଥାନ )

ରାମ—ଲକ୍ଷ୍ମଣ ! ଏ ବାନର କପରି ଅଳ୍ପାକ୍ଷରରେ ମଧୁର କଥାମାନ କହିଗଲେ ? ବୋଧହୁଏ ଏମାନଙ୍କଦ୍ୱାରା ଆମ୍ଭର କାର୍ଯ୍ୟସିଦ୍ଧି ହେବ ।

ହନୁମାନ୍—( ସୁଗ୍ରୀବଙ୍କ ସହ ପ୍ରବିଷ୍ଟ ହୋଇ )—ବୀର ! ଏ କପୀଶ୍ୱର ସୁଗ୍ରୀବ, ଆପଣଙ୍କପରି ସମଦଶାପନ୍ନ, ପରସ୍ପର କରସ୍ପର୍ଶ କରି ମିତ୍ରତା ସ୍ଥାପନ କରନ୍ତୁ, ତତ୍ପରେ ଆଳାପ କରିବେ ।

ରାମ—( କରପ୍ରସାରଣ କରି ସୁଗ୍ରୀବଙ୍କ କରସ୍ପର୍ଶ କରିବା । )

ଲକ୍ଷ୍ମଣ—( ଗଦ୍ ଗଦ୍ ସ୍ୱରେ ) ଅହେ, ହେ ଦିଗ୍‌ପାଳମାନେ ! ତୁମ୍ଭେମାନେ ସାକ୍ଷୀ, ଯାହାଙ୍କ ପିତା ଦଶରଥ ମହାରାଜାଙ୍କ ପଦକମଳ ପୃଥିବୀସ୍ଥ ରାଜାମାନଙ୍କ ଶିରମୁକୁଟରେ ପୂଜିତ ହେଉଥିଲା, ଯେ ଅନ୍ୟର ରକ୍ଷକ ଅଜ ପ୍ରତିପାଳକ ଅଟନ୍ତି, ସେ ଅଜ କପୀଶ୍ୱର ସୁଗ୍ରୀବଙ୍କର ଶରଣାପନ୍ନ ହେଲେ, ଏ କପୀଶ୍ୱର ଯୂଥପତିମାନଙ୍କ ସହିତ ଏହାଙ୍କର ସହାୟ ହୁଅନ୍ତୁ ।

ସୁଗ୍ରୀବ—( ରାମଚନ୍ଦ୍ରଙ୍କୁ ବୋଲକରି ) ମିତ୍ର ! ଆପଣ ସୁଧୀର, ଧର୍ମପରାୟଣ, ଆପଣଙ୍କର ସମସ୍ତଙ୍କଠାରେ ବାତ୍ସଲ୍ୟ ଅଛି,

ନୋହିଲେ କି ଅମ୍ଭେ ଜାତିରେ ବାନର ଅମ୍ଭ ସହିତ ଅପଣ ବନ୍ଧୁତା ସ୍ଥାପନ କରି ଥାନ୍ତେ ? ବର୍ତ୍ତମାନ ଅପଣ ଅମ୍ଭଙ୍କ ପ୍ରୀତିକର ବନ୍ଧୁହେଲେ, ଏଣିକି ଅପଣଙ୍କର ଅମ୍ଭର ସୁଖ ଦୁଃଖ ଏକହେଲା, ଅପଣ ଯେଉଁ ନିମିତ୍ତ ଏ ବନକୁ ଆସିଅଛନ୍ତି, ତାହା ହନୁମାନ୍ ଅମ୍ଭଙ୍କୁ କହି ଅଛନ୍ତି, ଅମ୍ଭେ ଅବଶ୍ୟ ସେ ଦୁରାତ୍ମା ହସ୍ତରୁ ଅପଣଙ୍କ ଧର୍ମପତ୍ନୀଙ୍କୁ ଉଦ୍ଧାର କରିବାକୁ ପ୍ରାଣ ପଣେ ଯତ୍ନ କରିବୁଁ, ଅପଣ ହନୁମାନ୍‌ଙ୍କଠାରୁ ଶୁଣିଥିବେ ନିଷ୍କା-ରଣରେ ଅମ୍ଭ ଭ୍ରାତା ଅମ୍ଭସହିତ ବିରୋଧ ସ୍ଥାପନ କରି ଅମ୍ଭଙ୍କ ରାଜ୍ୟରୁ ତଡ଼ିଦେଇ ବଳାତ୍କାରେ ଅମ୍ଭ ଭାର୍ଯ୍ୟାଙ୍କୁ ରଖିଅଛନ୍ତି, ଏ ଦୁଃଖ ଅମ୍ଭର କିପରି ଦୂର ହେବ ଅପଣ ଯତ୍ନ କରିବେ ।

ରାମ — ମିତ୍ର ! ସେଥି ପାଇଁ ଅପଣ ଚିନ୍ତିତ ହୁଅନ୍ତୁ ନାହିଁ, ଅମ୍ଭେ ଅବଶ୍ୟ ତାହାଙ୍କୁ ବିନାଶ କରିବୁଁ ; ରାବଣ ଅମ୍ଭ ଭାର୍ଯ୍ୟାଙ୍କୁ ହରଣ କରି ନେଇଅଛନ୍ତି ପରଦାରାପହାରୀଙ୍କପ୍ରତି ଅମ୍ଭ ମନରେ ବିଶେଷ ରାଗ ଜନ୍ମୁଅଛି ।

ସୁଗ୍ରୀବ—ହଁ, ଅମ୍ଭେ ହନୁମାନ୍‌ଙ୍କଠାରୁ ଶୁଣିଅଛୁଁ, ରାବଣ ଅପଣଙ୍କ ଭାର୍ଯ୍ୟାଙ୍କୁ ହରଣ କରି ନେଇଯାଇ ଅଛି, ଅମ୍ଭେ ଅବଶ୍ୟ ତାହାଠାରୁ ତାହାଙ୍କୁ ଉଦ୍ଧାର କରି ଆଣିଦେବୁଁ, ସେଥି-ପାଇଁ ଅପଣ ମନରେ ଆଉ ଚିନ୍ତିତ ହୁଅନ୍ତୁ ନା, ବର୍ତ୍ତମାନ ଅନୁମାନଦ୍ୱାରା ଜଣା ପଡ଼ିଲା ସେହି ଅପଣଙ୍କର ଧର୍ମପତ୍ନୀ ହେବେ, ନିଷ୍ଠୁର ନିଶାଚର ତାହାଙ୍କୁ ଆକାଶ ମାର୍ଗରେ ଘେନି ଯାଉଥିବାର ଅମ୍ଭେ ସ୍ୱଚକ୍ଷୁରେ ଦେଖିଅଛୁଁ, ସେ ସେତେ-ବେଳେ ହା ରାମ, ହା ଲକ୍ଷ୍ମଣ ବୋଲି ଚିତ୍କାର କରୁଥିଲେ, ସେ ଅମ୍ଭମାନଙ୍କୁ ପର୍ବତ ଉପରେ ବସିଥିବାର ଦେଖି କେତେ-ଗୁଡ଼ିଏ ଅଳଙ୍କାର ଫୋପାଡ଼ି ଦେଇଥିଲେ, ଅମ୍ଭେ ସେ ଗୁଡ଼ିକ

ନେଇ ଗୁମ୍ଫାରେ ରଖି ଦେଇଥିଲୁ, ଘେନଅସୁଁ, ଅପଣ
ଦେଖିଲେ ଚିହ୍ନି ପାରିବେ ଯେ । (ପ୍ରସ୍ଥାନ)

ଲକ୍ଷ୍ମଣ—ଆର୍ଯ୍ୟ ! ଦେବୀଙ୍କୁ ରାବଣ ହରଣ କରି ଘେନି ଯାଇଥିବା-
ମାର୍ଗ ଅମ୍ଭେମାନେ ଜାଣି ପାରିବା ବୋଲି ଦେବୀ ଶ୍ରୀଅଙ୍ଗରୁ
ଅଳଙ୍କାର କାଢ଼ି ବାଟରେ ପୋପାଡି ଦେଇ ଯାଇଥିବେ ।

ସୁଗ୍ରୀବ— (ଅଳଙ୍କାରସହ ପ୍ରବିଷ୍ଟ ହୋଇ) ଦେଖିବା ହୁଅନ୍ତୁ,
ଏହି ଅଳଙ୍କାରମାନ ସେ ପୋପାଡି ଦେଇ ଯାଇଥିଲେ,
(ରାମଚନ୍ଦ୍ରଙ୍କ ହାତକୁ ଦେବା)

ରାମ— (ଅଳଙ୍କାରମାନଙ୍କୁ ଚିହ୍ନି ହୃଦୟରେ ଲଗାଇ) ହା ! ପ୍ରିୟେ
ଜାନକୀ ! (ରୋଦନ କରିବା)

ସୁଗ୍ରୀବ— ଏ କଅଣ ! ଏତେ ଅଧୀର କାହିଁକି ହେଉଅଛନ୍ତି ?
ଶାନ୍ତ ହୁଅନ୍ତୁ ।

ରାମ—(ସକରୁଣେ) ଲକ୍ଷ୍ମଣ ! ଏ ରତ୍ନମାଳାଟିକୁ ଅମ୍ଭମାତା, ଜାନକୀ ନୂତନ
ହୋଇ ଅମ୍ଭ ଘରଠାକୁ ଆସିଲା ଦିନ ତାହାଙ୍କୁ ଦେଇଥିଲେ ।

ଲକ୍ଷ୍ମଣ— ଆର୍ଯ୍ୟ ! ଏ ରତ୍ନମାଳାକୁ ଚିହ୍ନି ପାରୁନାହିଁ । ପ୍ରଣାମ
କଲାବେଳେ ଦେଖିଚି ଏ ନୂପୁର ଯୋଡିକ ଦେବୀଙ୍କର ।

ରାମ— ମିତ୍ର ସୁଗ୍ରୀବ ! ସେ ଦୁରାତ୍ମା ଅମ୍ଭ ପ୍ରାଣପ୍ରିୟାଙ୍କୁ କେଉଁ ଦିଗକୁ
ଘେନିଯାଉଥିବାର ତୁମ୍ଭେ ଦେଖିଥିଲ ?

ସୁଗ୍ରୀବ— (ହାତ ଦେଖାଇ) ଏହି ଦକ୍ଷିଣ ଅଡ଼କୁ ।

ହନୂମାନ୍— ହଁ, ଏହି ଦକ୍ଷିଣ ଅଡ଼କୁ ଘେନି ଯାଉଥିଲା ।

ରାମ — ତୁମ୍ଭେ ମଧ୍ୟ ସେ ସମୟରେ ଏହାଙ୍କ ସଙ୍ଗେ ଥିଲ କି ?

ହନୂମାନ୍— ଆଜ୍ଞା ।

ରାମ— ମିତ୍ର ! ତୁମ୍ଭେ ତାହାକୁ ଚିହ୍ନ ? ତାହା ଘର କେଉଁ
ଦେଶରେ ଜାଣ ?

ସୁଗ୍ରୀବ— ଆଜ୍ଞା; ମୁଁ କେବଳ ଏତିକି ଜାଣେ ରାବଣ ରାକ୍ଷସ ମାନଙ୍କର ରାଜା, କିନ୍ତୁ ସେ ପରଦାରାପହାରୀର ଘର କେଉଁ ଦେଶରେ ଜାଣେ ନାହିଁ । ଆପଣ ଧୈର୍ଯ୍ୟ ଧରନ୍ତୁ, ମୁଁ ସ୍ୱଚତୁର ବେଗଗାମୀ ବାନରମାନଙ୍କୁ ଚତୁର୍ଦ୍ଦିଗକୁ ପଠାଇ ତାହାର କେଉଁ ଦେଶରେ ଘର ଠିକ୍ କରାଇଦେବି ।

ରାମ— ହଁ, ଆମ୍ଭେ ବୁଝି ପାରିଲୁଣି, ଏ କାର୍ଯ୍ୟ ତୁମ୍ଭର ଅସାଧ ହେବ ନାହିଁ, କିନ୍ତୁ ବର୍ତ୍ତମାନ ତୁମ୍ଭେ ବିପନ୍ନ ହୋଇଅଛ, ତୁମ୍ଭଙ୍କୁ ଶୀଘ୍ର ତୁମ୍ଭ ଭାର୍ଯ୍ୟା ଆଉ ରାଜ୍ୟ ପ୍ରଦାନ କରି ସବଳ କରାଇବା ଆମ୍ଭର ଉଚିତ ହେଉଅଛି, ଆସ ଏହିକ୍ଷଣି କିଷ୍କିନ୍ଧ୍ୟାକୁ ଯିବା, ଆଜି ଆମ୍ଭେ ସେ ପରଦାରାପହାରୀ ବାଳୀକୁ ବିନାଶ କରି ତୁମ୍ଭ ଭାର୍ଯ୍ୟା ଆଉ ରାଜ୍ୟ ତୁମ୍ଭଙ୍କୁ ପ୍ରଦାନ କରିବୁଁ ।

ଲକ୍ଷ୍ମଣ— ଆଜ୍ଞା, ଭଲ ବିଗ୍ରହ କରୁ ଅଛନ୍ତି, ଚାଲିବା ହୁଅନ୍ତୁ ଆଜି ସେହି କାର୍ଯ୍ୟ କରିବା ।

ସୁଗ୍ରୀବ— ମିତ୍ରଙ୍କର ଯେପରି ଇଚ୍ଛା । ( ସମସ୍ତଙ୍କର ପ୍ରସ୍ଥାନ )

ଇତି ତୃତୀୟ ଅଙ୍କ ।

## ଚତୁର୍ଥ ଅଙ୍କ ।

ଅଶୋକ ବନରେ ରାକ୍ଷସୀ—ପତିବ୍ରତା ସୀତା ।

୧ ଜଣ ରାକ୍ଷସୀ—ସୀତା ! ଶ୍ରେଷ୍ଠନୃପତି ପୌଲସ୍ତ୍ୟ ଦଶାନନଙ୍କ ଭାର୍ଯ୍ୟା ହେବାକୁ କାହିଁକି ନାହିଁ କରୁଛୁ ? ନାନାବିଧ ରତ୍ନ ସୁଶୋଭିତ ଅନ୍ତଃପୁର ଭୋଗ କରିବୁ, ସହସ୍ର ସହସ୍ର ଦେବକନ୍ୟା, ଗନ୍ଧର୍ବ କନ୍ୟା ଆଉ ନାଗକନ୍ୟା ତୋ ସେବାରେ ନିଯୁକ୍ତ ରହିବେ, ତ୍ରିଲୋକର ସମସ୍ତ ଧନରାଶି ଭୋଗ କରିବୁ କାହିଁକି ଭଲା ଏଠାରେ ଏତେ ଦୁଃଖ ଭୋଗ କରୁଛୁ ?

ସୀତା— ଅଗୋ ! ମାନବୀ କ ରାକ୍ଷସର ଭାର୍ଯ୍ୟା ହୋଇପାରେ ।

ରାକ୍ଷସୀ— ତୁ ମାନବୀ ବୋଲି କେବଳ ମାନବର ଭାର୍ଯ୍ୟା ହେବୁ ? ମାନବ ଗୁଡ଼ାକ ଅଳ୍ପାୟୁ, ରାକ୍ଷସମାନେ ଦୀର୍ଘଜୀବୀ, ତୁ ଲଙ୍କେଶ୍ୱରଙ୍କର ପତ୍ନୀ ହେଲେ ବହୁକାଳ ଆନନ୍ଦରେ ଯାପନ କରି ପାରିବୁ, ତୋ ସ୍ୱାମୀ ଆଉ ତତେ ଏଠାରୁ ଉଦ୍ଧାର କରି ନେଇ ପାରିବ କି ?

ସୀତା— ନ ନେଇ ପାରିଲେ ନାହିଁ, ମୁଁ ଏଠାରେ ପ୍ରାଣ ତ୍ୟାଗ କରିବି ।

ଅନ୍ୟ ରାକ୍ଷସୀ— ଅଲୋ ! ତୁ ଯେବେ ଆଜ ମହାରାଜାଙ୍କ ଭାର୍ଯ୍ୟା ହେବାକୁ ନ ମଙ୍ଗିବୁ, ତେବେ ଆମ୍ଭେ ରାକ୍ଷସୀ ଯାକ ମିଶି ତତେ ନିକି ଟିକି କରି କାଟି ଖାଇଯିବୁଁ ।

ସୀତା— ମୋତେ ତୁମ୍ଭେମାନେ ଖାଇଗଲେ ମୋ ପକ୍ଷରେ ଭଲ ହେବ ।

ଅନ୍ୟ ରାକ୍ଷସୀମାନେ— ( ଶୂଳଦେଖାଇ ) ଆଲୋ ! ତତେ ଏ ଶୂଳରେ ଫୋଡ଼ି ତୋ ରକ୍ତ ପାନ କରିବୁଁ ।

ସୀତା— ( ସଖେଦେ ରୋଦନ ) ହା ! ରଘୁନନ୍ଦନ ! ଯାହାକୁ ତୁମ୍ଭେ ମହାବଳ ବିରାଧ ରାକ୍ଷସ ହସ୍ତରୁ ରକ୍ଷା କରିଥିଲ, ଯେ ତୁମ୍ଭ ଦର୍ଶନ ଆଶାରେ ଆଜି ପର୍ଯ୍ୟନ୍ତ ଜୀବିତା ଥିଲା, ତାହାକୁ ଆଜି ରାକ୍ଷସୀମାନେ ହତ୍ୟା କଲେ ( ମୋହ )

୧ମ ରାକ୍ଷସୀ—ଅଲୋ ? ରହ, ରହ, ସୀତା ଭୟରେ ଜ୍ଞାନଶୂନ୍ୟା ହୋଇ ମୋହ ହୋଇ ଗଲାଣି । ( ଶୂଳକୁ ଫୋପାଡ଼ି ଦେଇ ସୀତାକୁ ଉଠାଇ ବସାଇ) ଅଲୋ ! ଏବ ମରିଗଲାଣି !

ତ୍ରିଜଟା—( ତ୍ରସ୍ତ ହୋଇ ସାଶ୍ଚର୍ଯ୍ୟେ ) ଅଲୋ । ଏ କଅଣ ?

ରାକ୍ଷସୀ—ଆଜି ମହାରାଜା ଆମ୍ଭଙ୍କୁ କହି ଯାଇ ଥିଲେ ସୀତାକୁ ଭୟ ଦେଖାଇ ଆମ୍ଭ ଭାର୍ଯ୍ୟା ହେବାକୁ ମଙ୍ଗାଇବ । ଆମ୍ଭେ

ମାନେ ଶୂଳ କଲାଇ ବସ୍ତ୍ର ଦେଖାଇବାରୁ ଏ ଏପରି ହେଲା ।

ତ୍ରିଜଟା—( ବସି ଯାଇ ସୀତାଙ୍କୁ କୋଳରେ ଧରି ) ଅଲୋ । ଏତ ମରି ଗଲାଣି ! ମୁଁ ତୁମ୍ଭମାନଙ୍କୁ ମନା କରି ଥିଲି ପରା, ସୀତାଙ୍କୁ ଆଉ ବସ୍ତ୍ର ଦେଖାଇବ ନାହିଁ ବୋଲି ? ଏବେ ଯାଙ୍କୁ ମାରିଲ, ବାଣ୍ଟି ଭୁଞ୍ଜି କରି ଖାଅ । ଅହା ! ନିର୍ଦ୍ଦୋଷରେ ବିଚାରୀ କେତେ କଷ୍ଟ ପାଇ ଶେଷକୁ ପ୍ରାଣ ହରାଇଲା !

୧ ଜଣ ରାକ୍ଷସୀ—( ସକରୁଣ ) ଅଲୋ ! ଆମ୍ଭେମାନେ କଅଣ କରିବୁଁ ? ସୀତା ମରି ଯିବାର ଶୁଣିଲେ ମହାରାଜା ଆମ୍ଭମାନଙ୍କୁ ମାରିପକାଇବେ ।

ତ୍ରିଜଟା—ମହାରାଜଙ୍କର କଅଣ ମଙ୍ଗଳ ହେବ ? ଆଜ ପାହାନ୍ତିଅରେ ମୁଁ ଯେଉଁ ଖରାପ ସ୍ୱପ୍ନ ଦେଖିଛି, ସେଥିରୁ ବୋଧ ହଉଛି ଅଳ୍ପ ଦିନରେ ଏ ଲଙ୍କା ଛାରଖାର ହୋଇଯିବ ।

ସୀତା—( ନିଶ୍ୱାସ ମାରିବା )

ତ୍ରିଜଟା—ଅଲୋ ! ସୀତା ବଞ୍ଚିଲାଣିଲୋ ! ( ହାତରେ ହଲାଇ ) ସୀତା, ସୀତା ?

ସୀତା—( ସଚେତ ହୋଇ ଦେହରେ ଲୁଗା ଘୋଡାଇବା )

ରାକ୍ଷସୀ—ଯାହା ହଉ ସୀତା ବଞ୍ଚିଗଲା ? ମହାରାଜା କହି ଗଲେ-ସିନା ଆଉ ଏଣିକି ଆମ୍ଭେମାନେ ଯାଙ୍କୁ ବସ୍ତ୍ର ଦେଖାଇବୁଁ ନାହିଁ ।

ତ୍ରିଜଟା—ସୀତା ! ତୋହର ଏଣିକି ଭଲ ହେବ, ତୁ ଆଉ ଏପରି ଅଧୈର୍ଯ୍ୟ ହୁଅନା, ଆଜ ପାହାନ୍ତିଅରେ ମୁଁ ସ୍ୱପ୍ନରେ ଦେଖିଛି ତୁମ୍ଭ ସ୍ୱାମୀଙ୍କର ଜଣେ ଦୂତ ଆସି ଏ ଲଙ୍କାକୁ ପୋଡି ଛାରଖାର କରି ପକାଇଛି, ଆଉ ଆମ୍ଭ ମହାରାଜା ତେଲ ସର ସର ହୋଇ ଗଧ ପିଠିରେ ବସି ଦକ୍ଷିଣ ଆଡକୁ ଯାଉଥିଲେ ତୁମ୍ଭେ ତୁମ୍ଭ ସ୍ୱାମୀଙ୍କ ସଙ୍ଗେ ପୁଷ୍ପକ ବିମାନରେ ବସି ଉତ୍ତର ଆଡକୁ

ଅସୁଥିଲ, ଆମ ମହାରାଜା ତୁମ୍ଭମାନଙ୍କୁ ଦେଖି ଭୟରେ ଗଧ ପିଠି ଉପରୁ ତଳେ ପଡ଼ିଗଲେ, ତେଲ ଲଗାଇବା, ଦକ୍ଷିଣ ଆଡ଼କୁ ଯିବା, ଗଧ ପିଠିରୁ ତଳେ ପଡ଼ିଯିବା, ଏସବୁ ଆମ ମହାରାଜାଙ୍କ ଅମଙ୍ଗଳ ସୂଚକ ସ୍ୱପ୍ନ ?

ରାକ୍ଷସୀ—ହଁ, ଏଗୁଡ଼ାକ ଆମ ମହାରାଜାଙ୍କ ଅମଙ୍ଗଳ ସୂଚକ ସ୍ୱପ୍ନ ନୁହେ କଅଣ ?

ସୀତା—ତ୍ରିଜଟା ! ମୋ ବାମ ଆଖି ଫୁରୁଛି, ସତେ ମୋ ସ୍ୱାମୀ ଏଠାକୁ ଆସି ମତେ ଉଦ୍ଧାର କରି ନେବେ କି ? ( ରୋଦନ )

ତ୍ରିଜଟା— ଅଲୋ ! ଆଉ କାନ୍ଦନା, ଈଶ୍ୱର ଏଣିକି ତୋହର ନିଶ୍ଚୟ ଭଲ କରିବେ, ଅସ, ପଦ୍ମ ପୋଖରୀକୁ ଯିବା, ମୁହଁ ହାତ ଧୋଇ ଆସିବୁ ।

ସୀତା—ଚାଲ୍ ଚାଲ୍, ( ସମସ୍ତଙ୍କର ପ୍ରସ୍ଥାନ ) ( ଦୃଶ୍ୟାନ୍ତ )

କିଷ୍କିନ୍ଧାରେ ରାମ ଓ ଲକ୍ଷ୍ମଣ ।

ଲକ୍ଷ୍ମଣ—ଆର୍ଯ୍ୟ ? ଦକ୍ଷିଣ ଆଡ଼କୁ ହନୁମାନ୍ ପ୍ରଭୃତି ବାନରମାନଙ୍କର ଅଧିନାୟକ କରି ବାଳିଙ୍କ ପୁତ୍ର ଅଙ୍ଗଦଙ୍କୁ ପଠାଇବା ମୋ ମତରେ ଭଲ ହୋଇ ନାହିଁ, କାହିଁକନା, ଆପଣ ତାହାଙ୍କ ପିତାଙ୍କୁ ବିନାଶ କରି ଅଛନ୍ତି, କୁମାରଙ୍କର ଅବଶ୍ୟ ଆପଣଙ୍କଠାରେ ବୈରଭାବ ଜନ୍ମି ଥିବ, ତାଲେ ସେ ଅମ୍ଭମାନଙ୍କ କାର୍ଯ୍ୟରେ ଯତ୍ନ ନ କରି ବାଧା ଜନ୍ମାଇବେ ?

ରାମ—କୁମାରଙ୍କର ଅଦ୍ୟପର୍ଯ୍ୟନ୍ତ ଅମ୍ଭମାନଙ୍କପ୍ରତି କୌଣସି ପ୍ରକାରେ ବୈରଭାବ ଦେଖା ଯାଇନାହିଁ, ଅଉ ସେ ଯେ ସୁଗ୍ରୀବଙ୍କ ଆଜ୍ଞା ଲଙ୍ଘନ କରିବେ ଏପରି ଅମ୍ଭକୁ ବୋଧ ହେଉ ନାହିଁ ।

ସୁଗ୍ରୀବ—( ପ୍ରବିଷ୍ଟ ହୋଇ )—ମିତ୍ର ! ଅଜ ବିନ୍ଧ୍ୟପର୍ବତ ବନରୁ ପଦ୍ମକ କୋଟି ବାନର-ସୈନ୍ୟ ଅସି ଅଛନ୍ତି ।

ରାମ—ମିତ୍ର ଅସ, ଅସ, ଆମ୍ଭ ନିକଟରେ ବସ, ଅଜଠାରୁ ତୁମ୍ଭ

ସୈନ୍ୟ ସଂଖ୍ୟା କେତେ ହେଲଣି ?

ସୁଗ୍ରୀବ—( ରାମଚନ୍ଦ୍ରଙ୍କ ନିକଟରେ ବସି ) ଆମ୍ଭ ବାନରସୈନ୍ୟମାନଙ୍କୁ ସ୍ଥିତ ଛତିଶ କୋଟି ହେବେ ।

ରାମ—ମିତ୍ର ! ତୁମ୍ଭର ଏ ଉପକାର ଏ ଜନ୍ମରେ ଆମ୍ଭେ ସୁଝି ପାରବୁ ନାହିଁ ।

ସୁଗ୍ରୀବ—ମିତ୍ର ! ଏପରି କହନ୍ତୁ ନାହିଁ, ମୁଁ ଆପଣଙ୍କ ନିକଟରେ ଋଣୀ ରହିଅଛି, ଆପଣ ବାଳିଙ୍କୁ ବିନାଶ କରି ମୋ ରାଜ୍ୟ ଅଉ ଭାର୍ଯ୍ୟା ମୋତେ ପ୍ରଦାନ କରିବାରେ ଅପଣଙ୍କ ପ୍ରତିଜ୍ଞା ରକ୍ଷିତ ହୋଇଅଛି, ମୁଁ ଅଦ୍ୟପର୍ଯ୍ୟନ୍ତ ମୋ ପ୍ରତିଜ୍ଞା ରକ୍ଷାକରି ପାରିନାହିଁ ବୋଲି ଲଜ୍ଜିତ ଅଛି ।

ହନୁମାନ—( ପ୍ରବିଷ୍ଟ ହୋଇ ) — ରାମଚନ୍ଦ୍ରଙ୍କର ଜୟ, କପିରାଜ ସୁଗ୍ରୀବଙ୍କର ଜୟ ।

ସୁଗ୍ରୀବ—ତୁମ୍ଭେ କାର୍ଯ୍ୟ ସାଧନ କରି ଅସି ଅଛତ ? କୁମାର ଅଙ୍ଗଦ ପ୍ରଭୃତି ତୁମ୍ଭସଙ୍ଗେ ଯାଇଥିବା ବାନରମାନେ କାହାନ୍ତି ?

ହନୁମାନ—ଆଜ୍ଞା, ଅପଣଙ୍କ ଆଜ୍ଞାମତେ ଜାନକୀଙ୍କୁ ଲଙ୍କାରେ ଥିବା ଦେଖି ଅସିଅଛି ସେ ଜୀବିତ ଅଛନ୍ତି, ମଧ୍ୟ ତାଙ୍କ ପାତିବ୍ରତ୍ୟ ରକ୍ଷାକରି ପାରିଅଛନ୍ତି, କୁମାର ଅଙ୍ଗଦ ପ୍ରଭୃତି ବାନରମାନେ ଅପଣଙ୍କ ମଧୁଗନ୍ଧିବନରେ ସାନନ୍ଦରେ ମଧୁପାନ କରି କ୍ରୀଡ଼ା କୌତୁକ କରୁ ଅଛନ୍ତି, କାଳ ବିଳମ୍ବ ଘଟିଥିବାରୁ ଅପଣମାନେ ବ୍ୟାକୁଳ ହେଉଥିବେ ବୋଲି ଏ ଶୁଭ ସମ୍ବାଦ ଶୀଘ୍ର ଜଣାଇ ଦେବାପାଇଁ ଅଗରେ ବାହାରି ଅସିଲି ।

ରାମ—ତୁମ୍ଭେ ଅମ୍ଭ ପ୍ରାଣପ୍ରିୟାଙ୍କୁ ସ୍ୱଚକ୍ଷୁରେ ଦେଖି ଅସିଅଛ ?

ହନୁମାନ—ଆଜ୍ଞା !

ଲକ୍ଷ୍ମଣ—ସେ ଲଙ୍କା କେଉଁଠାରେ ?

ହନୁମାନ୍—ଆଜ୍ଞା, ସମୁଦ୍ର ମଧ୍ୟରେ ।

ରାମ—( ସାଶ୍ଚର୍ଯ୍ୟେ ) ତୁମ୍ଭେମାନେ ସମୁଦ୍ର ପାରହୋଇ ସେଠାକୁ କପରି ଯାଇଥିଲ ?

ହନୁମାନ୍—ଆଜ୍ଞା, ଆପଣଙ୍କ ଚରଣ ଅନୁଗ୍ରହରୁ ଶତ ଯୋଜନ ବିସ୍ତୃତ ସମୁଦ୍ରକୁ ଗୋଷ୍ପଦବତ୍ ଡେଇଁ ପଡିଥିଲି ।

ରାମ—ତୁମ୍ଭେ ତେବେ ଏକାକୀ ଯାଇଥିଲ ?

ହନୁମାନ—ଆଜ୍ଞା ।

ସୁଗ୍ରୀବ—ମିତ୍ର ! ହନୁମାନଙ୍କ ଛଡା ଏ ଦୁଃସାଧ୍ୟ କାର୍ଯ୍ୟ ଆଉ କିଏ କରନ୍ତା ?

ରାମ—ସାଧୁ ହନୁମାନ୍, ସାଧୁ ! ସମୁଦ୍ର ମଧ୍ୟସ୍ଥ ଲଙ୍କାରେ ଜାନକୀ ଥିବାର ତୁମ୍ଭେ କପରି ଜାଣି ପାରିଥିଲ ?

ହନୁମାନ—ଆଜ୍ଞା, ଆମ୍ଭେମାନେ ଏଠାରୁ ଯାଇ ବିନ୍ଧ୍ୟ ପର୍ବତ ବନ ଆଉ କେତେ ବୃକ୍ଷବହୁଳ ଦେଶ, ନଗର, ଗ୍ରାମ, ଦୁର୍ଗ ଗହନ ବନ ଅନୁସନ୍ଧାନ କରି କରି ପର୍ଯ୍ୟଟନ କ୍ରମେ ସମୁଦ୍ରକୂଳରେ ଯାଇ ପହଞ୍ଚି ଯାଇଥିଲୁ, ଦୈବାତ୍ ସେଠାରେ ଜଟାୟୁଙ୍କ ଭ୍ରାତା ସମ୍ପାତିଙ୍କ ସଙ୍ଗେ ଆମ୍ଭମାନଙ୍କର ସାକ୍ଷାତ ହୋଇଥିଲା ସେହି ମହାତ୍ମା, ରାବଣର ଘର ସମୁଦ୍ର ମଧ୍ୟସ୍ଥ ଲଙ୍କାରେ ଥିବାର ଆମ୍ଭମାନଙ୍କୁ କହି ଦେଇ ଥିଲେ ।

ରାମ—ଜାନକୀ ସେ ଲଙ୍କାର କେଉଁଠାରେ ଥିବାର ତୁମ୍ଭେ ଦେଖି ଆସିଲ ?

ହନୁମାନ—ଆଜ୍ଞା, ରାବଣ ଅନ୍ତଃପୁର ମଧ୍ୟରେ ଥିବା ଅଶୋକ କୋଠାରେ ସେ ଅବରୁଦ୍ଧା ଅଛନ୍ତି, ରାକ୍ଷସୀମାନେ ତାହାଙ୍କୁ ତର୍ଜନ ଗର୍ଜନକରି ପ୍ରତିଦିନ ରାବଣର ଭାର୍ଯ୍ୟା ହେବାପାଇଁ ଭୟ ପ୍ରଦର୍ଶନ କରୁଅଛନ୍ତି, ସେ କେବଳ ଆପଣଙ୍କ ଅନୁରାଗରେ ଆଜ ପର୍ଯ୍ୟନ୍ତ ଜୀବିତା ଅଛନ୍ତି, ପୃଷ୍ଠରେ ଏକମାତ୍ର

ବେଣୀ ଲମ୍ବିତା, ସର୍ବଦା ଆପଣଙ୍କ ଚିନ୍ତାରେ ନିମଗ୍ନା, ହିମା-
ଗମରେ କମଳିନୀ ଦଶିଲ୍ଲ ପରି ସେ ଅତିଶୟ ମ୍ଳାନ ଦେଖା-
ଯାଉ ଅଛନ୍ତି ।

ରାମ—ସେ ରାବଣର ଅନ୍ତଃପୁର କିପରି ?

ହନୂମାନ—ଆଜ୍ଞା, ତା ଅନ୍ତଃପୁର ଦେଖିବାକୁ ଅତି ମନୋହର, ପ୍ରକୋଷ୍ଠମାନ ପ୍ରଶସ୍ତ, ସୋପାନମାନ ମଣିମୟ, ଗବାକ୍ଷମାନ ସ୍ୱର୍ଣ୍ଣମୟ ଏବଂ ସ୍ତମ୍ଭମାନ ସରଳ, ସୁଦୀର୍ଘ ଆଉ ମଣିମୟ ଏବଂ ସମସ୍ତ ଗୃହ ସର୍ବଦା ରତ୍ନ ପ୍ରଦୀପରେ ପ୍ରଦୀପ୍ତ, ଉପରେ ଚନ୍ଦ୍ରାତପ-ମାନ ମୁକ୍ତାସ୍ତବକରେ ସୁଶୋଭିତ ଏହି ଗୃହମାନଙ୍କ ମଧ୍ୟରେ ଚିତ୍ରାଚ୍ଛାଦନରେ ଆଚ୍ଛାଦିତ ରତ୍ନ ଜଡିତ ହସ୍ତୀଦନ୍ତ ପଲଙ୍କ-ମାନଙ୍କ ଉପରେ ସୁବେଶା କାମିନୀମାନେ ସୌଦାମିନୀ ପ୍ରାୟ ବିରାଜିତା ହୋଇ ଗୃହର ଶୋଭା ବର୍ଦ୍ଧନ କରୁଅଛନ୍ତି ।

ରାମ—ହଁ, ରାବଣ ବଡ ଭାଗ୍ୟବାନ୍, ଆଚ୍ଛା ତୁମ୍ଭେ ଜାନକୀଙ୍କୁ ତ କେବେ ଦେଖି ନ ଥିଲ କିପରି ଚିହ୍ନିପାରିଲ ?

ହନୂମାନ—ଆଜ୍ଞା, ମୁଁ ତା ଅନ୍ତଃପୁରରେ ଥିବା ବିଭୂଷିତା, ପାନୋ-ନ୍ମତ୍ତା କାମିନୀମାନଙ୍କୁ ଦେଖି ଭାବିଥିଲି, ଜାନକୀ ରାମଚନ୍ଦ୍ରଙ୍କ ପ୍ରତି ଏକାନ୍ତ ଅନୁରକ୍ତା, ରାବଣ ତାହାଙ୍କୁ ବଳତ୍କାରରେ ହରଣ-କରି ଆଣିଅଛି, ଏପରି ବିରହାବସ୍ଥାରେ ସେ ଯେ ଯଥା-ହାର ବିହାର ପ୍ରଭୃତି ସୁଖ ଭୋଗରେ ଆସକ୍ତା ଥିବେ ଏହା କଦାଚ ସମ୍ଭବ ନୁହେ, ଏବଂ ମୁଁ ଆପଣଙ୍କଠାରୁ ଜାନକୀଙ୍କର ଯେପରି ରୂପଲାବଣ୍ୟର ବର୍ଣ୍ଣନା ଶୁଣି ଥିଲି, ସେପରି ରୂପ ଲାବଣ୍ୟବତୀ କାମିନୀ ତା ଅନ୍ତଃପୁର ମଧ୍ୟରେ ଜଣେ ହେଲେ ନ ଦେଖି, ତା ଅନ୍ତଃପୁର ମଧ୍ୟରେ ଥିବା ଅଶୋକ ବନରେ ପ୍ରବେଶ କରିଥିଲି, ସେଠାରେ ଦେଖିଲି ଶିଂଶପାବୃକ୍ଷ ମୂଳରେ ଗୋଟିଏ ରାକ୍ଷସୀପରିବୃତା କାମିନୀ ଦୁଃଖରେ ପୁନଃ ପୁନଃ

ଦୀର୍ଘ ନିଶ୍ୱାସ ପକାଉ ଅଛନ୍ତି, ତାହାଙ୍କ ସର୍ବାଙ୍ଗ ଅତି ପରି-
ଧେୟମଳଲିପ୍ତ, କିନ୍ତୁ କାନ୍ତି ଧୂମଜଡ଼ିତ ଅଗ୍ନିଶିଖା ପ୍ରାୟ
ଉଜ୍ଜ୍ୱଳ ଦେଖାଯାଉ ଥିଲା, ତାହାଙ୍କୁ ଦେଖି ମୁଁ ସ୍ଥିର କରି-
ଥିଲି ନିଶ୍ଚୟ ଏ ଅବରୁଦ୍ଧା କାମିନୀ ଜାନକୀ ହେବେ ।

ରାମ—ଜାନକୀ ତୁମ୍ଭଙ୍କୁ ଆମ୍ଭ ଦୂତ ହୋଇ ଯାଇଥିବା ଜାଣି
ଅଛନ୍ତି ?

ହନୁମାନ—ଆଜ୍ଞା, ଶୁଣିବା ହୁଅନ୍ତୁ, ମୁଁ ସେହି ଶିଂଶପା ବୃକ୍ଷଉପରେ
ଯାଇ କିଛିକ୍ଷଣ ବସି ରହିଥିଲି, ଯେତେବେଳେ ରାକ୍ଷସୀମାନେ
ମଦ୍ୟପାନରେ ଉନ୍ମତ୍ତ ହୋଇ ଭୂମିଶାୟିନୀ ହୋଇଥିଲେ,
ସେତେବେଳେ ମୁଁ ଆପଣଙ୍କ ନାମକୀର୍ତ୍ତନ କରି କରି ବୃକ୍ଷରୁ
ଅବତୀର୍ଣ୍ଣ ହୋଇଥିଲି, ଆପଣଙ୍କ ନାମ ବାରମ୍ବାର ଉଚ୍ଚାରଣ
କରିବାର ଶୁଣି ଦେବୀ ମତେ ସଜଳ ନୟନରେ ଚାହିଁବାକୁ
ଲାଗିଲେ । ତହୁଁ ମୁଁ ଆପଣଙ୍କ ନାମ ଲେଖା ମୁଦ୍ରିକୁ ଦେଇ
କହିଥିଲି, ମୁଁ ରାମଚନ୍ଦ୍ରଙ୍କ ଦୂତ, ଏ ରାମଚନ୍ଦ୍ରଙ୍କ ଅଙ୍ଗୁଳିରେ
ଥିବା ରତ୍ନ ମୁଦ୍ରିକା, ଯଦି ତୁମ୍ଭେ ତାହାଙ୍କର ପ୍ରକୃତ ଧର୍ମପତ୍ନୀ
ଜାନକୀ ଅଟ, ତେବେ ଏ ମୁଦ୍ରିକା ଗ୍ରହଣ କର, ସେ ତତ୍କ୍ଷଣେ
କର ପ୍ରସାରଣ ପୂର୍ବକ ସାଦରେ ମୁଦ୍ରିକା ଗ୍ରହଣ କରି ସଜଳ-
ନୟନରେ ନିରୀକ୍ଷଣ କରିବାକୁ ଲାଗିଲେ, ସେତେବେଳେ
ତାହାଙ୍କ ମ୍ଳାନମୁଖ ପ୍ରହ୍ଲାଦ-ଗ୍ରାସବି-ମୁକ୍ତ-ଚନ୍ଦ୍ର ପରି ପ୍ରଫୁଲ୍ଲ ଦେଖା-
ଯାଇ ଥିଲା ।

ରାମ—(ସକରୁଣେ ) ହଁ, ତହୁଁ ଉତ୍ତାରୁ ?

ହନୁମାନ—ତହିଁ ଉତ୍ତାରୁ ଦେବ ! ସେ କିଛିକ୍ଷଣ ମୁଦ୍ରିକାକୁ ନିରୀକ୍ଷଣ
କରି ଅନବରତ ବର୍ଷଣ ପୂର୍ବକ ଗଦ୍‌ଗଦ୍ କଣ୍ଠରେ କହିଥିଲେ
ବାନର ! ରାମ ଲକ୍ଷ୍ମଣ ଭଲ ଅଛନ୍ତିତ ? ସେ ମତେ ଏଠାରୁ

ଉଦ୍ଧାର କରି ନେବେଟି କି ? ଏହା କହୁ କହୁ ମୃଦୁ କଣ୍ଠରେ ରୋଦନ କରିବାକୁ ଲାଗିଲେ ।

ରାମ—(କାନ୍ଦଉଠିବା )

ହନୁମାନ୍—ଦେବ ! ଶାନ୍ତ ହୁଅନ୍ତୁ, ମୁଁ ଦେବୀଙ୍କୁ ନାନା ପ୍ରକାରେ ପ୍ରବୋଧ କରାଇ ସୁଗ୍ରୀବଙ୍କ ସହିତ ସଖ୍ୟ ସ୍ଥାପନ ପ୍ରଭୃତି ଯେଉଁ ସବୁ ଉଦ୍ଯୋଗ କରି ଯାଉଅଛୁ ତାହା ଜଣାଇ ବିଦାୟ ମାଗି- ଥିଲି, ସେ ମତେ ବିଦାୟ ଦେବା ସମୟରେ ତାହାଙ୍କର ଚୂଡ଼ା- ମଣି ଦେଇ ଅଛନ୍ତି ନେବା ହୁଅନ୍ତୁ । ( କାନରୁ ଫିଟାଇ ରାମ- ଚନ୍ଦ୍ରଙ୍କୁ ଦେବା )

ରାମ—( ଚୂଡ଼ାମଣିକୁ ଗ୍ରହଣ କରି ବହୁକ୍ଷଣ ନିରୀକ୍ଷଣ କରି ସକ- ରୁଣେ )—ମିତ୍ର ସୁଗ୍ରୀବ ! ବିବାହ ସମୟରେ ବିଦେହ ରାଜା ଏ ମଣିରତ୍ନଟି ଜାନକୀଙ୍କୁ ଦେଇଥିଲେ, ଅମ୍ଭ ପ୍ରେୟସୀ ଏହାକୁ ସବୁବେଳେ ମସ୍ତକରେ ଧାରଣ କରି ଥାଆନ୍ତି, ଏହାକୁ ଦେଖି ଦେବୀଙ୍କୁ ସାକ୍ଷାତରେ ଦେଖିଲା ପରି ଅମ୍ଭଙ୍କୁ ବୋଧ ହେଉ- ଅଛି ( ରୋଦନ ) ।

ସୁଗ୍ରୀବ—ମିତ୍ର ! ଶାନ୍ତ ହୁଅନ୍ତୁ, ହନୁମାନ୍ ! ତୁମ୍ଭେ ରାମଚନ୍ଦ୍ରଙ୍କ ଦୂତ ହୋଇ ଯାଇଥିବା କଥା ରାବଣ କେବେ ଜାଣିପାରି ନାହିଁ ?

ହନୁମାନ୍—ନ ଜାଣନ୍ତା କାହିଁକି ଭଲରୂପେ ଜାଣିଅଛି ।

ସୁଗ୍ରୀବ—ଭଲରୂପେ କଅଣ ଜାଣିଅଛି ?

ହନୁମାନ୍—ମୁଁ ଦେବୀଙ୍କଠାରୁ ବିଦାୟ ନେଇ ତାହାର ସେହି ନନ୍ଦନବନ ତୁଲ୍ୟ ଅଶୋକ ବନକୁ ଆଉ ତାହାର ପ୍ରାସାଦ ଚୂଡ଼ାମାନଙ୍କୁ ଭଗ୍ନ କରିବାକୁ ଲାଗିଲି, ପ୍ରହରୀ ମାନେ ଏ କଥା ଯାଇ ରାବଣକୁ ଜଣାଇବାରୁ ସେ ମତେ ଦମନ କରିବା ପାଇଁ ଅନେକ ଥର ଅନେକ ରାକ୍ଷସ ପଠାଇ ଥିଲା, ମୁଁ ସେ ସମ- ସ୍ତଙ୍କୁ ବିନାଶ କରୁଥିଲି, ତହିଁରେ ରାବଣ ପୁତ୍ର ଇନ୍ଦ୍ରଜିତ

ଅଛି ମତେ ନାଗପାଶରେ ବନ୍ଧନ କରି ରାବଣ ନିକଟକୁ
ଘେନି ଯାଇଥିଲେ, ରାବଣ ମତେ ଦେଖି କ୍ରୋଧରେ ରକ୍ତବର୍ଣ୍ଣ
ଚକ୍ଷୁମାନଙ୍କୁ ବୁଲାଇ କହିଥିଲେ, "ଦୁରାତ୍ମନ୍ ତୋହର ଘର
କେଉଁ ଦେଶରେ ? କାହିଁକି ଏଠାକୁ ଆସିଅଛୁ ? କାହିଁକି
ତୁ ଆମ୍ଭ ପ୍ରମୋଦ ବନ ଭାଙ୍ଗି ରାକ୍ଷସ ମାନଙ୍କୁ ବିନାଶ କଲୁ ?"
ଏହା ଶୁଣି ମୁଁ କହିଥିଲି, ଆମ୍ଭ ଘର କିଷ୍କିନ୍ଧାରେ, ଆମ୍ଭେ
ବାଳିଙ୍କ ଭ୍ରାତା ସୁଗ୍ରୀବଙ୍କ ମନ୍ତ୍ରୀ, ଏବଂ ରାମଚନ୍ଦ୍ରଙ୍କ ଦୂତ
ଅଟୁଁ, ଜାନକୀଙ୍କୁ ଅନୁସନ୍ଧାନ କରିବା ପାଇଁ ଏଠାକୁ ଆସି-
ଅଛୁଁ; ତୁମ୍ଭ ସହିତ ସାକ୍ଷାତ ହେବ ବୋଲି ତୁମ୍ଭ ପ୍ରମୋଦ
ବନ ଭାଙ୍ଗିଅଛୁଁ, ଆଉ ରାକ୍ଷସମାନେ ଆମ୍ଭଙ୍କୁ ଆକ୍ରମଣ କର-
ବାରୁ ଆତ୍ମରକ୍ଷା ନିମନ୍ତେ ସେମାନଙ୍କୁ ବିନାଶ କରିଅଛୁଁ,
ଏହା ଶୁଣି ସେ କ୍ରୋଧରେ ଅଧୀର ହୋଇ ଆମ୍ଭଙ୍କୁ ବିନାଶ
କରିବାକୁ ଘାତକଙ୍କୁ ଆଦେଶ ଦେଇଥିଲେ, କିନ୍ତୁ ତାହାର
ଧାର୍ମିକ ଭ୍ରାତା ବିଭୀଷଣ, ଦୂତ ଅବଧ୍ୟ ବୋଲି ଅନେକ ବୁଝାଇ
କହିବାରୁ, ସେ ଆମ୍ଭ ଲାଙ୍ଗୁଳ ଦଗ୍ଧ କରି ବିକଳାଙ୍ଗ କରି
ଶୀଘ୍ର ଛାଡ଼ିଦେବାକୁ ଆଜ୍ଞାଦେଇ ବାହାର ଯାଇଥିଲେ ।

ସୁଗ୍ରୀବ—ହଁ, ତହୁଁ ଉତ୍ତାରୁ ?

ହନୂମାନ୍—ତହୁଁ ଉତ୍ତାରୁ ଦେବ ! ରାକ୍ଷସମାନେ ମୋ ଲାଙ୍ଗୁଳରେ
ବସ୍ତ୍ର ଗୁଡ଼ାଇ ତୈଳ ଢାଳି ଅଗ୍ନି ଲଗାଇ ଦେଇଥିଲେ ।

ରାମ—( ସାଶ୍ଚର୍ଯ୍ୟେ ) ପ୍ରକୃତରେ ଅଗ୍ନି ଲଗାଇ ଦେଇଥିଲେ ?

ହନୂମାନ୍—ଆଜ୍ଞା, ମୁଁ ତହୁଁ ବନ୍ଧନ ଛିନ୍ନ କରି ଏକଘରୁ ଅନ୍ୟଘରକୁ
ଲମ୍ଫ ପ୍ରଦାନ କରିବାକୁ ଲାଗିଲି, ରାକ୍ଷସମାନଙ୍କ ଘର ଦଗ୍ଧ
ହେବାକୁ ଲାଗିଲା, ଅଗ୍ନିଦେବ ଶିଖାଜାଲ ବିସ୍ତାର କରି ପ୍ରମ-
ବଳେ ସମସ୍ତ ଲଙ୍କା ଦଗ୍ଧ କରିବାକୁ ଲାଗିଲେ, ସେତେବେଳେ
ତାହାଙ୍କ ଶିଖା ଗଗନସ୍ପର୍ଶୀ, ଧୂମଶୂନ୍ୟ ଆଉ କିଂଶୁକ ପୁଷ୍ପବତ୍

ଦେଖା ଯାଇଥିଲା, ସମସ୍ତ ଲଙ୍କାପୁରୀ ହାହାରବଦିଗ୍ଧ ରୁଦ୍ଧ, ସ୍ତ୍ରୀ, ବାଳକମାନଙ୍କ ରୋଦନରେ ପୂର୍ଣ୍ଣ ହୋଇ ଯାଇ-ଥିଲା ।

ରାମ—ତୁମ୍ଭେ ସମସ୍ତ ଲଙ୍କାପୁରୀ ଦଗ୍ଧ କରି ଆସିଅଛ ? ଆମ୍ଭ ଜାନକୀର ଦଗ୍ଧ ହୋଇଯାଇ ନାହାନ୍ତି ?

ହନୂମାନ୍—ଆଜ୍ଞା, ମୁଁ ଲାଙ୍ଗୁଳାଗ୍ନିକୁ ସମୁଦ୍ର ଜଳରେ ନିର୍ବାଣ କରି ଦେଖି ଆସିଛି, ପାତିବ୍ରତ୍ୟ ବଳରୁ ଦେବୀଙ୍କ ଅଶୋକବନ ଛଡ଼ା ଆଉ ସମସ୍ତ ସ୍ଥାନ ଦଗ୍ଧ ହୋଇ ଯାଇଥିଲା ।

ରାମ—ହନୂମାନ୍ ! ତୁମ୍ଭେ ଆମ୍ଭର ଯେଉଁ ଉପକାର କରି ଅଛ ତାହାର ଅନୁରୂପ ପୁରସ୍କାର ଅମ୍ଭେ ତୁମ୍ଭଙ୍କୁ ଏଠାରେ ପ୍ରଦାନ କରିପାରିଲୁ ନାହିଁ । ଏଠାରେ ଆମ୍ଭର ଆଲିଙ୍ଗନ ଯଥାସର୍ବସ୍ୱ, ଆସ, ତୁମ୍ଭଙ୍କୁ ଆଲିଙ୍ଗନ କରିବୁଁ ( ତଥା ଅଭିନୟ ) ।

ହନୁମାନ—ଆଜ୍ଞା, ମୁ ଜାତିରେ ବାନର, ମୁଁ ଈଶର ଏକାର୍ଯ୍ୟ କରି ପାରି ଥାଆନ୍ତି ? କେବଳ ଆପଣଙ୍କ ପାଦପଦ୍ମ ଅନୁଗ୍ରହରୁ ଏହା ମୁଁ କରି ପାରିଅଛି ?

ରାମ—ତୁମ୍ଭେ ପବନଙ୍କ ପୁତ୍ର ଆଉ ସୁଗ୍ରୀବଙ୍କ ମନ୍ତ୍ରୀ ଅଟ ? ଏପରି ସବିନୟ ଉକ୍ତି ତୁମ୍ଭର ଯୋଗ୍ୟ ହୋଇଅଛି ?

ଲକ୍ଷ୍ମଣ—ଆର୍ଯ୍ୟ ! ହନୁମାନ ଯେପରି ବୀର ସେହିପରି ବୁଦ୍ଧିମାନ ଅଟନ୍ତି, ଦେଖନ୍ତୁ ଆମ୍ଭର ଦୌତ୍ୟ କାର୍ଯ୍ୟ ସୁକୌଶଳେ ସାଧନ କରି, ତତ୍ପରେ ଲଙ୍କା ଦହନ ପ୍ରଭୃତି ଅବାନ୍ତର କାର୍ଯ୍ୟମାନ କରି ଆସି ଅଛନ୍ତି ।

ରାମ—ଲକ୍ଷ୍ମଣ ! କଅଣ କରିବା ? କିପରି ଶୀଘ୍ର ବାନର ସୈନ୍ୟ ଘେନି ଲଙ୍କାକୁ ଯିବା, କାଳ ବିଳମ୍ବ ହେଲେ ନିଷ୍ଟୟ ଜାନକୀ ପ୍ରାଣ ହରାଇ ଦେବେ, ଆମ୍ଭମାନଙ୍କର ସମସ୍ତ ଯତ୍ନ ବୃଥା ହୋଇ ଯିବ ( ଭାବନା ) ।

ସୁଗ୍ରୀବ—ମିତ୍ର ! ଶାନ୍ତ ହୁଅନ୍ତୁ, ଏଣିକି ଯାହା କର୍ତ୍ତବ୍ୟ ସ୍ଥିର କରନ୍ତୁ, ଆସ, ଏହିକ୍ଷଣି ଯୁଦ୍ଧ ଯାତ୍ରା କରିବା ।

ରାମ—ମିତ୍ର ! ଭଲ କହିଲ, ଆଜ ଶୁଭଦିନ, ସୂର୍ଯ୍ୟ ମଧ୍ୟଗାମୀ ହୋଇ ଅଛନ୍ତି, ଏହା ଜୟପ୍ରଦ ମୁହୂର୍ତ୍ତ, ଆସ, ଏହିକ୍ଷଣି ଯୁଦ୍ଧ ଯାତ୍ରା କରିବା । ( ରାମ ଉଠିବା )

ସମସ୍ତେ—( ଉଠି ) ଜୟ ରାମଚନ୍ଦ୍ରଙ୍କର ଜୟ ( ସମସ୍ତଙ୍କର ପ୍ରସ୍ଥାନ ) ।

ଇତି ଚତୁର୍ଥ ଅଙ୍କ ।

୫ମ ଅଙ୍କ ( ପ୍ରଥମ ଦୃଶ୍ୟ ) ।

ରାବଣ ସିଂହାସନରେ ଆସୀନ ଦୁଇ ପାର୍ଶ୍ୱେ ବିଭୀଷଣ ଇନ୍ଦ୍ରଜିତ ପ୍ରଭୃତି

ରାବଣ— ( ଉଠିହୋଇ ) ଆତ୍ମୀୟଗଣ ! ରାମର ଏକମାତ୍ର ଦୂତ ସାମାନ୍ୟ ବନଚର ବାନର ଗୋଟିଏ ଆସି, ଆମ୍ଭ ସୁଦୃଢ଼ ଚୈତ୍ୟ-ପ୍ରାସାଦ ମାନ ଭାଙ୍ଗି ଚୂର୍ଣ୍ଣ କରି ପକାଇଲା, ଏବଂ ଆମ୍ଭର ଅନେକ ମହାବଳ ରାକ୍ଷସ ବିନାଶ କରି ଲଙ୍କା ପୋଡ଼ି ଚାଲି-ଗଲା, ଆମ୍ଭେମାନେ ଏହାର ପ୍ରତିବିଧାନ କଅଣ କରିବା ! ସେତ ଅବଶ୍ୟ ଯାଇ ଜାନକୀ ଏଠାରେ ଥିବାର ରାମ ଆଗେ ଜଣାଇ ଥିବ, ଯଦି ରାମ ତପୋ ବଳରେ କି ଦିବ୍ୟାସ୍ତ୍ର ବଳରେ କିମ୍ବା ଅନ୍ୟ କୌଣସି କୌଶଳରେ ସମୁଦ୍ର ପାରହୋଇ ଏଠାକୁ ଆସେ ତେବେ ଆମ୍ଭେମାନେ କଅଣ କରିବା ? ଯାହା ତୁମ୍ଭମାନଙ୍କୁ ଯୁକ୍ତି ସଙ୍ଗତ ବୋଧ ହଉଚି, ପରାମର୍ଶ କରି ଆମ୍ଭ ସମକ୍ଷରେ ବ୍ୟକ୍ତ କର, କାହିଁକି ନା ପୂର୍ବେ ଆମ୍ଭେ ତୁମ୍ଭମାନଙ୍କ ପରାମର୍ଶରେ ଯେତେ କାର୍ଯ୍ୟ କରିଅଛୁଁ ସେ ସମସ୍ତ-କାର୍ଯ୍ୟରେ କୃତକାର୍ଯ୍ୟ ହୋଇଅଛୁଁ ।

୧ ଜଣ ରାକ୍ଷସ— (ଦଣ୍ଡାୟମାନ ହୋଇ ହାତଯୋଡ଼ି) ରାକ୍ଷସ ନାଥ ! ଆପଣଙ୍କ ଦରବାରସ୍ଥିତ ଅମିତବଳଶାଳୀ ଏତେ ରାକ୍ଷସ ବୀର ଥାଉ ଥାଉ ଆମ୍ଭମାନଙ୍କର ଭକ୍ଷ କ୍ଷୁଦ୍ର ନର ବାନର ଗୁଡ଼ାଙ୍କୁ ଶତ୍ରୁ ବୋଲି ଗଣନା କରୁ ଅଛନ୍ତି ? ଆପଣ ଏ ପୃଥିବୀରୁ ଇନ୍ଦ୍ରତୁଲ୍ୟ ବଳଶାଳୀ କେତେ କ୍ଷତ୍ରିୟ ବୀରଙ୍କୁ ପରାସ୍ତ କରି ବିନାଶ କରିବା ହୋଇ ଅଛନ୍ତି, ମହେଶ୍ୱରଙ୍କ ଭ୍ରାତା ଦିଗପାଳ କୁବେରଙ୍କୁ ପରାସ୍ତ କରି ଅଧୀନରେ ରଖିଅଛନ୍ତି, ପାତାଳକୁ ଅଭିଯାନ କରି ବାସୁକୀ, ତକ୍ଷକ, ଶଙ୍ଖ ପ୍ରଭୃତି ନାଗମାନଙ୍କୁ ପରାସ୍ତ କରି ବଶୀଭୂତ କରି ରଖିଅଛନ୍ତି, ଆପଣ କ୍ଷୁଦ୍ର ନର ବାନର ଗୁଡ଼ାଙ୍କୁ ଶଙ୍କା କରୁ ଅଛନ୍ତି ? ରାମ ବଳରେ, ବୀର୍ଯ୍ୟରେ ବା ବିଭବରେ ଏମାନଙ୍କ ସମକକ୍ଷ ହେବ ନାହିଁ, ଆପଣ ନିଶ୍ଚି-ନ୍ତରେ ବିଶ୍ରାମ କରନ୍ତୁ, ସେ ଏଠାକୁ ଆସିଲେ ଏକା କୁମାର ଇନ୍ଦ୍ରଜିତ ତାହାଙ୍କୁ ସମସ୍ତ ବାନର ବଳ ସହ ବିନାଶ କରି ପାରିବେ ( ଅସୀକ )।

ଅନ୍ୟ ରାକ୍ଷସ— ( ଦଣ୍ଡାୟମାନ ହୋଇ କରଯୋଡ଼େ ) ମହାରାଜ ! ଆମ୍ଭେ ଯୁଦ୍ଧରେ ଦେବ ଦାନବ ଗନ୍ଧର୍ବ ମାନଙ୍କୁ ସୁଦ୍ଧା ପରାସ୍ତ କରିପାରୁଁ, ଏ ନର ବାନର ଗୁଡ଼ାଙ୍କୁ କିଏ ପଚାରେ ? ବିପଦ ଉପସ୍ଥିତ ହେବାର କୌଣସି ସମ୍ଭାବନା ନ ଥିବାରୁ ଆମ୍ଭେ-ମାନେ ପାନ, ଭୋଜନ ପରବଶ ହୋଇ ପ୍ରମତ୍ତ ଥିଲୁଁ, ଏହେତୁ ଗୋଟାଏ ବନଚର ବାନର ଆସି ଏଠାରେ ଏତେ କାଣ୍ଡ କରି ବାହାରି ଗଲା, ନୋହିଲେ କି ସେ ଏଠାରୁ ସହଜରେ ପ୍ରାଣ ଘେନି ପଳାଇ ଯାଇ ପାରି ଥାଆନ୍ତା ? ( ଅସୀକ )।

ଅନ୍ୟ ରାକ୍ଷସ— ( ଦଣ୍ଡାୟମାନ ହୋଇ ) ରାକ୍ଷସନାଥ ! ପ୍ରକୃତରେ ଗୋଟାଏ ସାମାନ୍ୟ ବନଚର ବାନର ଆମ୍ଭମାନଙ୍କୁ ଯେଉଁ ପରାଭବ ଦେଇ ଯାଇଅଛି ତାହା ଆମ୍ଭେମାନେ କେବେ ଭୁଲି

ଯାଉରୁ ନାହିଁ ଆପଣ ମତେ ଆଜ୍ଞା ଦଅନ୍ତୁ ? ଏକାକୀ ଯାଇ ସମସ୍ତ ବାନରଙ୍କୁ ବିନାଶ କରି ପୃଥିବୀରୁ ବାନର ଶୂନ୍ୟ କରି ଦେଇ ଆସିବି ( ଅସୀନ )।

ଅନ୍ୟ—( ଦଣ୍ଡାୟମାନ ହୋଇ ) ରାମ ଲକ୍ଷ୍ମଣ ଜୀବିତ ଥାଉଁ, ଚପଳ-ସ୍ୱଭାବ ଦୟାର୍ଦ୍ର ବାନରମାନଙ୍କୁ ବିନାଶ କଲେ କି ଫଳ ହେବ ? ମହାରାଜ ! ମତେ ଆଜ୍ଞା କରନ୍ତୁ ମୁଁ ଏହିକ୍ଷଣି ପରଘ-ପ୍ରହାରରେ ରାମ ଲକ୍ଷ୍ମଣଙ୍କ ସହ ସମସ୍ତ ବାନରଙ୍କୁ ବିନାଶ କରି ଆସିବି ।( ଅସୀନ )।

ବିଭୀଷଣ—( ଦଣ୍ଡାୟମାନ ହୋଇ ) ତୁମ୍ଭେମାନେ କାହିଁକି ମହାରାଜାଙ୍କ ସମକ୍ଷରେ ଏପରି ବୃଥା ଗର୍ବ ପ୍ରକାଶ କରୁଛ ? ଏପରି ବୃଥା ଗର୍ବ ପ୍ରକାଶ କରି ମହାରାଜାଙ୍କୁ ଯୁଦ୍ଧାର୍ଥ ଉତ୍ସାହିତ କରାଇବା ତୁମ୍ଭମାନଙ୍କର ଉଚିତ ହେଉ ନାହିଁ, ରାମର ଧର୍ମପତ୍ନୀଙ୍କୁ ଚୋରି କରି ଆଣିବା କି ମହାରାଜାଙ୍କର ଉଚିତ ହୋଇ ଅଛି ? ଯେଉଁ କାର୍ଯ୍ୟ କଲେ ଶେଷରେ ବିପଦ ଘଟିବା ସମ୍ଭବ, ସେପରି କାର୍ଯ୍ୟ କରିବା କଦାଚ ଉଚିତ ନୁହେ । ମୋ ମତରେ ଲଙ୍କା-ଭୟ ହେତୁରୂପିଣୀ ସୀତାଙ୍କୁ ତ୍ୟାଗ କରିବା ମହାରାଜା-ଙ୍କର ଉଚିତ ହେଉ ଅଛି, ମହାରାଜ ! ରାମଙ୍କୁ ଜାନକୀ ଅର୍ପଣ କରନ୍ତୁ, ନ କଲେ ଏ ଲଙ୍କାପୁରୀ ବିଧ୍ୱସ୍ତ ହୋଇ ଯିବ, ମୁଁ ଆପଣଙ୍କ ଭ୍ରାତା ବୋଲି ଆପଣଙ୍କର କଲ୍ୟାଣ କରି ଏ ସତ୍ୟ କଥା କହୁଲି, ଆପଣ ଧର୍ମ ଅଛି ସୁଜନାଶକର କ୍ରୋଧ ତ୍ୟାଗ କରନ୍ତୁ । ( ଅସୀନ )।

ରାବଣ—ପ୍ରହସ୍ତ ! ତୁମ୍ଭର ମତ କଅଣ ?

ପ୍ରହସ୍ତ—( ଦଣ୍ଡାୟମାନ ହୋଇ )—ମହାରାଜ ! ଆମ୍ଭେ କେବେ ଯୁଦ୍ଧରେ ଦେବ ଦାନବ ଆଉ ଗନ୍ଧର୍ବମାନଙ୍କ ଠାରୁ ସୁଦ୍ଧା ଭୟ ପାଇ-ନାହୁଁ, ରାମ ଗୋଟାଏ ମନୁଷ୍ୟ ତାହାଠାରୁ ଆମ୍ଭ କି ଭୟ

ହୋଇ ପାରେ ? ଅମ୍ଭେ ପ୍ରତିଜ୍ଞା କରି କହୁଅଛୁ, ରାମ ଏଠାକୁ ଆସିଲେ ଅମ୍ଭେ ଏକାକୀ ତାହାକୁ ବାନର ବଳସହ ବିନାଶ କରି ପାରିବୁଁ ।

ବିଭୀଷଣ—( ଛିଡ଼ାହୋଇ ) ତୁମ୍ଭେ ରାମକୁ ପରାସ୍ତ କରି ପାରିବ ବୋଲି ଏ ଯେଉଁ ଗର୍ବ ପ୍ରକାଶ କରୁଛ, ତାହା କଦାପି କାର୍ଯ୍ୟରେ ପରିଣତ କରି ପାରିବ ନାହିଁ, ରାମ-କର-ବିମୁକ୍ତ-ସୁଶାଣିତ ଶର ତୁମ୍ଭ ଗାତ୍ର କେବେ ସ୍ପର୍ଶ କରିନାହିଁ ବୋଲି ତୁମ୍ଭେ ଏପରି ବୃଥା ଆତ୍ମଶ୍ଳାଘା ପ୍ରକାଶ କରୁଛ, ତୁମ୍ଭେମାନେ କେହି ସେ ବିକ୍ରମଶାଳୀ ରାମର ବିକ୍ରମ ସହ୍ୟ କରି ପାରିବ ନାହିଁ, ଏହା ନିଶ୍ଚିତ, ମହାରାଜ କାମବ୍ୟସନରେ ଅତ୍ୟନ୍ତ ଅଭିଭୂତ ହୋଇ ଅଛନ୍ତି, ଏ ହେତୁରୁ ତୁମ୍ଭମାନଙ୍କ ପରି ଶତ୍ରୁ ତୁଲ୍ୟ ବନ୍ଧୁମାନଙ୍କ ସହିତ ମନ୍ତ୍ରଣା କରି ରାକ୍ଷସକୁଳ ନିର୍ମୂଳ କରିବା ନିମନ୍ତେ ଏକାର୍ଯ୍ୟ କରିବାକୁ ପ୍ରବୃତ୍ତ ହୋଇ ଅଛନ୍ତି, ଅମ୍ଭେ ମହାରାଜଙ୍କର ଆଉ ସମସ୍ତ ରାକ୍ଷସଙ୍କର କଲ୍ୟାଣ ନିମିତ୍ତ ଏକଥା କହୁଅଛୁଁ । ( ଅସୀନ ) ।

ଇନ୍ଦ୍ରଜିତ—( ଛିଡ଼ାହୋଇ ) —ପିତୃବ୍ୟ ! ଆପଣ କାହିଁକି ଭୟାତୁର ପରି ଏପରି ନିରର୍ଥକ କଥା ଗୁଡ଼ାଏ କହୁ ଅଛନ୍ତି ? ଆପଣ କେବଳ ବଳ, ବୀର୍ଯ୍ୟ, ପରାକ୍ରମ ଆଉ ଶୌର୍ଯ୍ୟ, ଧୈର୍ଯ୍ୟାଦରେ ଆମ୍ଭ ବଂଶରେ ହୀନ ଅଟନ୍ତି, ଆପଣ ରାମର ଭୟ ଆମ୍ଭମାନଙ୍କୁ କଅଣ ଦେଖାଇବା ହେଉ ଅଛନ୍ତି ? ଆମ୍ଭର ଜଣେ ରାକ୍ଷସ ସମସ୍ତ ବାନର ବଳସହ ରାମକୁ ବିନାଶ କରି ପାରେ, ଆପଣ ସ୍ୱଚକ୍ଷୁରେ ଦେଖି ଅଛନ୍ତି, ଅମ୍ଭେ ଦେବରାଜ ଇନ୍ଦ୍ରଙ୍କୁ ବନ୍ଧକରି ଏ ମର୍ତ୍ତ୍ୟକୁ ଆଣିଥିଲୁ, ଅମ୍ଭେ ଏତାଦୃଶ ବଳଶାଳୀ ହୋଇ ସାମାନ୍ୟ ମନୁଷ୍ୟ ରାମକୁ ବିନାଶ କରି ପାରିବୁ ନାହିଁ ? ଆପଣଙ୍କର ଯଦି ଭୟ ହେଉଛି ଆପଣ

ଅନ୍ତରୀକ୍ଷରେ ବସନ୍ତୁ, ଆମ୍ଭେମାନେ କଅଣ କରି ପାରୁଁ
ଦେଖିବେ । (ଅସୀବ) ।

ବିଭୀଷଣ— ( ଉଠିହୋଇ ) ପୁତ୍ର ! ତୁମ୍ଭର ଅଳ୍ପ ବୟସ, ତୁମ୍ଭର
ବୁଦ୍ଧି ଏ ପର୍ଯ୍ୟନ୍ତ ପରିପକ୍ୱ ହୋଇନାହିଁ, ବର୍ତ୍ତମାନ ତୁମ୍ଭେ
କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାର କରିବାକୁ ଅକ୍ଷମ ଅଟ, ତୁମ୍ଭେ ରାମର
ପରାକ୍ରମ ଦେଖିନାହିଁ ଏ ହେତୁରୁ ଏପରି କହୁଚ ?

ରାବଣ— ବିଭୀଷଣ ! ରାମ ଆମ୍ଭ ଶରାସନବିମୁକ୍ତ ଦ୍ୱିଜିହ୍ୱପନ୍ନଗ
ସମ ଶରାଘାତ କେବେ ଅନୁଭବ କରିନାହିଁ ସେହି ହେତୁରୁ
ଆମ୍ଭଙ୍କୁ ଆକ୍ରମଣ କରିବାକୁ ସାହସୀ ହୋଇଅଛି; ଦେଖିବ
ଆମ୍ଭେ ତାହାକୁ ଆମ୍ଭ କାର୍ମୁକବିନିର୍ମୁକ୍ତ ବଜ୍ରତୁଲ୍ୟ ଶର-
ଜାଲରେ ଭସ୍ମୀଭୂତ କରି ପକାଇବୁଁ ।

ବିଭୀଷଣ— ( ଉଠିହୋଇ ) ଆଜ୍ଞା, ଆପଣ ଯାହା ପ୍ରତିଜ୍ଞା କରୁ-
ଅଛନ୍ତି ତାହା କଦାଚ କାର୍ଯ୍ୟରେ ପରିଣତ କରି ପାରିବେ
ନାହିଁ, ସେ ଜନସ୍ଥାନରେ ଏକାକୀ ଆମ୍ଭର ମହାବଳ ୧୪ ହଜାର
ରାକ୍ଷସ ବଳ ବିନାଶ କରି ଅଛି, ବର୍ତ୍ତମାନ ସୁଗ୍ରୀବ ସହାୟୁ
ରାମକୁ ଆପଣ କେଉଁ ସାହସରେ ଜୟ କରି ପାରିବେ ବୋଲି
ପ୍ରତିଜ୍ଞା କରୁଅଛନ୍ତି ?

ରାବଣ— ( ସକ୍ରୋଧେ ) ବିଭୀଷଣ ? ଆମ୍ଭେ ଶତ୍ରୁମାନଙ୍କୁ ବିନାଶ
କରି ଖ୍ୟାତି ଆଉ ବିପୁଳ ଐଶ୍ୱର୍ଯ୍ୟ ଲାଭ କରିବା ବୋଧ ହୁଏ
ତୁମ୍ଭର ଅସନ୍ତୋଷର କାରଣ ହୋଇ ଅଛି, ଏ ହେତୁରୁ
ତୁମ୍ଭେ ଆମ୍ଭଙ୍କୁ ବାରମ୍ବାର ନିରୁତ୍ସାହ କରାଉ ଅଛ, କୁଳା-
ଙ୍ଗାର ? ତୁ ଆମ୍ଭର ଆତ୍ମୀୟ ହୋଇ ଆମ୍ଭ ସମ୍ମୁଖରେ ଶତ୍ରୁର
ପ୍ରଶଂସା କରୁଚୁ ? ଯା, ଯା, ତୁ ଆମ୍ଭ ଭ୍ରାତା ବୋଲି ତୋତେ
ଆମ୍ଭେ ଛାଡିଦେଲୁଁ, ଅନ୍ୟ କେହି ହୋଇଥିଲେ ତାହାର
ଏହିକ୍ଷଣି ଶିରଚ୍ଛେଦନ କରି ଥାଆନ୍ତୁ, ବରଂ ଶତ୍ରୁ ଅଥବା

ସକ୍ରୋଧ-ସର୍ପ ସହିତ ବାସ କରିବା ଭଲ କିନ୍ତୁ ତୋପରି ନାମକୁମିତ୍ର ଶତ୍ରୁପକ୍ଷପାତୀ ବନ୍ଧୁସହିତ ବାସ କରିବା କଦାଚ ଉଚିତ ନୁହେ, ତୁ ଏହିକ୍ଷଣି ଆମ୍ଭ ରାଜ୍ୟରୁ ବାହାରି ଯା ।

ବିଭୀଷଣ—ମହାରାଜ ! ଆପଣ ମୋହର ଜ୍ୟେଷ୍ଠ ଭ୍ରାତା, ପିତୃ ତୁଲ୍ୟ ମାନନୀୟ ଅଟନ୍ତି, ଆପଣଙ୍କ ଭର୍ତ୍ସନା ସହିବା ମୋହର ଉଚିତ ହେଉଅଛି, ମୁଁ ଆପଣଙ୍କ କଲ୍ୟାଣ କାମନାରେ ଏ ଯେଉଁ ସବୁ ନୀତିସଙ୍ଗତ ହିତକର ବାକ୍ୟ କହିଲି ତାହା ଆପଣ ଗ୍ରହଣ ନ କରି ଭର୍ତ୍ସନା କଲେ ଏଥିପାଇଁ ମୁଁ ଦୁଃଖିତ ନାହିଁ । ମହାରାଜ ଏଠାରେ ପ୍ରିୟବାଦୀ ଅନେକ ଅଛନ୍ତି କିନ୍ତୁ ଶୁଣିବାକୁ ଅପ୍ରିୟ, ପରିଣାମଶୁଭପ୍ରଦବାକ୍ୟର ଶ୍ରୋତା ଆଉ ବକ୍ତା ଏଠାରେ କେହି ନାହାନ୍ତି, ଆଉ ଆୟୁ ଶେଷହେଲେ ମୂଢ଼ ବ୍ୟକ୍ତିମାନେ ହିତୈଷୀ ବନ୍ଧୁର ଉପଦେଶ ଶୁଣନ୍ତି ନାହିଁ, ଆଉ ଏ ଲଙ୍କା ପ୍ରତି ଦୈବର କୁଦୃଷ୍ଟି ପଡ଼ିଅଛି, ମତେ ବିଦାୟ ଦେଇ ଆପଣ ଏଠାରେ ସୁଖରେ ଥାଆନ୍ତୁ ମୁଁ ଆପଣଙ୍କ ରାଜ୍ୟରୁ ଯାଉଅଛି, ପ୍ରଣାମ ( ପ୍ରସ୍ଥାନ ) ।

ରାବଣ—ଆମ୍ଭେ ବିଭୀଷଣକୁ କଅଣ ଅନ୍ୟାୟ କହିଲୁ ?

୧ଜଣ ରାକ୍ଷସ—( ଦଣ୍ଡାୟମାନ ହୋଇ ) ନାହିଁ ମହାରାଜ ! ଆପଣ ଯଥାର୍ଥ କହି ଅଛନ୍ତି, ପ୍ରକୃତରେ ବିଭୀଷଣ ଆପଣଙ୍କ ଶ୍ରୀବୃଦ୍ଧି ଦେଖିବାକୁ ଚାହାନ୍ତି ନାହିଁ ।

୧ଜଣ ରାକ୍ଷସ—( ପ୍ରବିଷ୍ଟ ହୋଇ ) ମହାରାଜାଙ୍କର ଜୟ ହଉ, ଦେବ ! ଦଶରଥାତ୍ମଜ ରାମଲକ୍ଷ୍ମଣ, ସୁଗ୍ରୀବ ପାଳିତ ଦ୍ୱିତୀୟ ସମୁଦ୍ର ତୁଲ୍ୟ ଅପ୍ରମେୟ ବାନର ସେନାସହ ସାଗର ଆରପାରିରେ ଉପସ୍ଥିତ ହୋଇ ଅଛନ୍ତି ।

ରାବଣ—( ସାଶ୍ଚର୍ଯ୍ୟେ ) ରାମ ବାନର ସେନା ଘେନି ସମୁଦ୍ର ଅର ପାରକୁ ଆସିଗଲାଣି !

ରାକ୍ଷସ—ଆଜ୍ଞା, ବାନରମାନେ ଏ ଲଙ୍କାକୁ ଆସି ଯୁଦ୍ଧ କରିବେ ବୋଲି ଅତ୍ୟନ୍ତ ଉତ୍କଣ୍ଠିତ ହୋଇ ଅଛନ୍ତି, କେ ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କରୁଅଛି, କେ ବୃକ୍ଷ ନିକ୍ଷେପ କରି ପାର ହେବାକୁ ଯତ୍ନ କରୁଅଛି, ଅନ୍ୟମାନେ ଉଦ୍‌ଗ୍ରୀବ ହୋଇ ଆମ୍ଭ ଏ ଲଙ୍କା ଆଡ଼କୁ ଚାହିଁ ଅଛନ୍ତି ।

ରାବଣ—ହିଁ, ସେମାନଙ୍କ ଯତ୍ନ ସେତିକି ହିଁ, ସମୁଦ୍ର ପାର ହେବେ ନା ଏଠାକୁ ଆସିବେ ? ପ୍ରହସ୍ତ ! ଶତ୍ରୁକୁ ସାମାନ୍ୟ ମନେକରି ନିଶ୍ଚିନ୍ତ ରହିବା ମଧ୍ୟ ଆମ୍ଭମାନଙ୍କର ଉଚିତ ନୁହେଁ, ହନୁ ଆମ୍ଭ ଗଡ଼ପ୍ରାଚୀର ଭିତରେ ପରିଖାମାନ ପୋଡି ପକାଇ ଅଛି, ତୁମ୍ଭେ ସେ ଗୁଡ଼ିକ କଢ଼ାଇ ଦେଇ ପରିଖାମାନ ଦୁର୍ଗଭିତ୍ତି ସ୍ୱଚ୍ଛନ୍ଦାର୍ଥ କରାଇ ଦିଅ ଆଉ ଭଗ୍ନପ୍ରାଚୀର ମରାମତି କରାଇ ଦେଇ ଯନ୍ତ୍ର, ବାଣମାନ ଯଥା ସ୍ଥାନରେ ରଖାଇ ଦିଅ ।

ପ୍ରହସ୍ତ—ଯେ ଆଜ୍ଞା ।

ରାବଣ—ଶୁକ ?

ଶୁକ—( ପ୍ରବେଶ ହୋଇ ) ଆଜ୍ଞା ଦିଅନ୍ତୁ ମହାରାଜ ।

ରାବଣ—ତୁମ୍ଭେ ଏହିକ୍ଷଣି ସୁଗ୍ରୀବଙ୍କ ନିକଟକୁ ଯାଅ, ଆମ୍ଭେ କହୁଅଛୁ ବୋଲି ତାହାଙ୍କୁ କହିବ "ତୁମ୍ଭେ ବାଳିଙ୍କ ଭ୍ରାତା ଏ ହେତୁ ଆମ୍ଭର ପରମ ମିତ୍ର ଅଟ, ତୁମ୍ଭ ଆମ୍ଭର କୌଣସି ବିରୋଧ ନାହିଁ, ପର ନିମିତ୍ତ କାହିଁକି ଆମ୍ଭ ସହିତ ବିରୋଧ ସ୍ଥାପନ କରୁଛ ? ଆମ୍ଭ ପୁରୀ ସମୁଦ୍ର ବେଷ୍ଟିତ, ଦେବ ଦାନବମାନଙ୍କର ଅଗମ୍ୟ, ରାମ ମାନବ, ତାହାର କି ସାମର୍ଥ୍ୟ ଯେ ମକରକୁମ୍ଭୀର-ପୂର୍ଣ୍ଣ ଅତଳସ୍ପର୍ଶ ସମୁଦ୍ର ପାର ହୋଇ ଏଠାକୁ ଆସି ପାରିବ, ତୁମ୍ଭେ ଋକ୍ଷରାଜ ଆଉ ମହାବୀର ଅଟ, ରାମକୁ ସାହାଯ୍ୟ କରି ତୁମ୍ଭର କି ଲାଭ ? ଯଦିଚ ଆମ୍ଭେ ତାହାର ଧର୍ମପତ୍ନୀଙ୍କୁ ହରଣ କରି ଆଣିଅଛୁଁ ସେଥିରେ ତୁମ୍ଭର କ୍ଷତି କଅଣ ହେଲା ? ତୁମ୍ଭେ

କିଷ୍କିନ୍ଧ୍ୟାକୁ ଫେରି ଯାଅ, ନର ବାନରଙ୍କ କଥା କିଏ ପଚାରେ, ଦେବ ଗନ୍ଧର୍ବମାନେ ସୁଦ୍ଧା ଏ ରାକ୍ଷସପୁରୀରେ ପ୍ରବେଶ କରି ପାରିବେ ନାହିଁ ।

ଶୁକ— ଯେ ଆଜ୍ଞା ।

ରାବଣ—[ ଉଠି ] ବର୍ତ୍ତମାନ ସଭା ଭଙ୍ଗ କରାଯାଉ ।

ସମସ୍ତେ—ଯେ ଆଜ୍ଞା [ ସମସ୍ତଙ୍କର ପ୍ରସ୍ଥାନ ) ଇତି ପଞ୍ଚମ ଅଙ୍କ ।

---

## ଷଷ୍ଠ ଅଙ୍କ ।

ରାମ ଲକ୍ଷ୍ମଣ ଏବଂ ନଳ ।

ରାମ—ଲକ୍ଷ୍ମଣ ! ଦେଖ, ଅମ୍ଭେ ବ୍ରତାବଲମ୍ବୀ ହୋଇ ନଦୀପତି ସମୁଦ୍ରଙ୍କୁ ଏତେ ଆରାଧନା କଲୁଁ, ସେ ଏପର୍ଯ୍ୟନ୍ତ ଆମ୍ଭଙ୍କୁ ଦର୍ଶନ ଦେଲେ ନାହିଁ, ବୋଧ ହୁଏ ତାହାଙ୍କ ମନରେ ଗର୍ବ ଜନ୍ମିଅଛି, ଅମ୍ଭେ କ୍ଷମାବାନ୍ ବୋଲି ସେ ଆମ୍ଭଙ୍କୁ ଅସମର୍ଥ ବିଚାର କରି ଅଛନ୍ତି, ଅମ୍ଭେ ଏହିକ୍ଷଣି ତାହାଙ୍କୁ ଶରବର୍ଷଣଦ୍ୱାରା ଏପରି ଉଦ୍‌ବେଜିତ କରିବୁଁ ଯେ, ତାହାଙ୍କର ବୀଚମାଳା କୂଳ ଲଙ୍ଘି ଏଣେ ତେଣେ ପ୍ରଧାବିତ ହେବେ, ମକର ଜଳହସ୍ତୀ ପ୍ରଭୃତି ଜଳଜନ୍ତୁମାନେ ଛିନ୍ନ ଭିନ୍ନ ହୋଇ ଏଣେ ତେଣେ ପଡ଼ିବେ, ମତ୍ସ୍ୟଜୀବୀ ପକ୍ଷୀମାନେ ଉପରେ ଉଡ଼ିବାକୁ ଲାଗିବେ, ଅମ୍ଭେ ସମସ୍ତ ଜଳ ବାଷ୍ପରେ ପରିଣତ କରିଦେବୁଁ, ସାଗର ଶଯ୍ୟାରୁ ଭୂମଣ୍ଡଳ ଧୂଳିପଟଳ ଉତ୍ଥିତ ହେବ, ଅମ୍ଭ ବାନରମାନେ ପଦ ବ୍ରଜରେ ଲଙ୍କାକୁ ଯାଇ ପାରିବେ, ( ଶର ସନ୍ଧାନର ଅନୁଷ୍ଠାନ )

ଲକ୍ଷ୍ମଣ— ( ରାମ ଚନ୍ଦ୍ରଙ୍କ ହାତ ଧରି ପକାଇ ) ଆର୍ଯ୍ୟ ! ଆର୍ଯ୍ୟ ! କ୍ରୋଧ ସମ୍ବରଣ କରନ୍ତୁ, ନଦୀପତିଙ୍କୁ ସଂକ୍ଷୁବ୍ଧ କରନ୍ତୁ ନାହିଁ, ଦେଖନ୍ତୁ ଦେବତାମାନେ ଅନ୍ତରୀକ୍ଷରେ ଥାଇ ମା,ମା, ବୋଲି ନିଷେଧ

କରୁ ଅଛନ୍ତି ।

ରତ୍ନ ବିଶିଷ୍ଟ ରତ୍ନାକରଙ୍କର ପ୍ରବେଶ ।

ସମସ୍ତେ—( ପ୍ରଣାମ କରିବା )

ରତ୍ନାକର—ସୌମ୍ୟ ରଘୁନନ୍ଦନ ! ପୃଥିବୀ, ଅପ, ତେଜ, ମରୁତ, ବ୍ୟୋମ ଏ ପଞ୍ଚ ବ୍ରହ୍ମସୃଷ୍ଟି ଅନାଦି କାଳରୁ ଅନାଦି ମାର୍ଗ ଅବଲମ୍ବନ କରି ନିଜ ନିଜ ନିର୍ଦ୍ଦିଷ୍ଟ ସ୍ୱଭାବରେ ଅବସ୍ଥାନ କରୁଅଛନ୍ତି, ଅମ୍ଭେ ଯେ ଅଗାଧ ଆଉ ଦୁସ୍ତର ହୋଇଅଛୁଁ ଏହା ଅମ୍ଭର ସ୍ୱଭାବ ଅଟେ, ଅମ୍ଭେ ଭୟରେ କି ସ୍ନେହରେ କି ନିଜ ଇଚ୍ଛାରେ ସ୍ୱଭାବ ପରିବର୍ତ୍ତନ କରିପାରୁ ନାହିଁ, ତୁମ୍ଭେ ବୁଦ୍ଧିମାନ୍ ସବୁ ଜାଣ, କିନ୍ତୁ ବିପନ୍ନ ହୋଇ ଥିବାରୁ କିଂକର୍ତ୍ତବ୍ୟବିମୂଢ଼ ହୋଇଅଛ, ତୁମ୍ଭର ଅମ୍ଭପ୍ରତି କ୍ରୋଧ ପ୍ରକାଶ କରିବା ଉଚିତ ହୋଇନାହିଁ, ଅମ୍ଭେ ତୁମ୍ଭଙ୍କୁ ପାରି ହେବାର ଗୋଟିଏ ସଦୁପାୟ କହି ଦେଉଅଛୁଁ, ଶୁଣ, ତୁମ୍ଭର ଏ ସେନାପତି ନଳ ବିଶ୍ୱକର୍ମାଙ୍କ ପୁତ୍ର, ମାତୃ ଗର୍ଭରେ ଥିବା ସମୟରେ ପିତାଙ୍କ ଠାରୁ ସେତୁନିର୍ମାଣ କୌଶଳ ଶିକ୍ଷା କରିଅଛନ୍ତି, ତୁମ୍ଭେ ଏହାଙ୍କୁ ଅନ୍ୟ ବାନରମାନଙ୍କସହ ଅମ୍ଭ ନିକଟକୁ ପଠାଇ ଦିଅ, ଏ ବାନରମାନଙ୍କଦ୍ୱାରା ଶିଳା ସଂଗ୍ରହ କରାଇ ଅମ୍ଭେ ବହନକରି ପାରିବା ଭଳି ଏବଂ ତୁମ୍ଭର ସମସ୍ତ ବାନର ଅବଲୀଳ କ୍ରମେ ପାରି ହୋଇ ପାରିବା ଭଳି ସେତୁ ନିର୍ମାଣ କରାଇ ଦେଇ ପାରିବୁଁ, ଅମ୍ଭେ ଯାଉଅଛୁଁ । ( ପ୍ରସ୍ଥାନ )

ରାମ—ନଳ ! ତୁମ୍ଭଠାରେ ଏତେଗୁଣ ଅଛି, ଏପର୍ଯ୍ୟନ୍ତ ଅମ୍ଭଙ୍କୁ ତୁମ୍ଭେ କହି ନ ଥିଲ ?

ନଳ—ଆଜ୍ଞା, ଆପଣ ମୋତେ କେବେ ପଚାରି ନ ଥିବାରୁ ମୁଁ ଆତ୍ମ-ଗୁଣର ପରିଚୟ ଦେଇ ନ ଥିଲି ।

ରାମ— ହଉ, ଏବେ ଯାଅ, ବାନରମାନଙ୍କୁ ନେଇ ଅମ୍ଭର ଏ
କାର୍ଯ୍ୟଟି ଶୀଘ୍ର କରିଦିଅ ।

ନଳ— ଯେ ଆଜ୍ଞା । ( ପ୍ରସ୍ଥାନ )

ରାମ— ଲକ୍ଷ୍ମଣ ! ସମୟ ଯେତେ ଅତୀତ ହୁଏ ଶୋକ ସେତେ ଲଘୁ
ହୁଏ, କିନ୍ତୁ ଏହା ଅମ୍ଭ ପକ୍ଷରେ ବିପରୀତ ହୋଇଅଛି, ସମୟ
ଯେତେ ଅତୀତ ହେଉଅଛି ଜାନକୀ ଅଦର୍ଶନଜନିତ ଶୋକ
ଅମ୍ଭ ହୃଦୟରେ ତେତେ ପ୍ରବଳ ହେଉଅଛି ।

ନେପଥ୍ୟେ—ଅହେ ହେ ! ବାନରମାନେ ! ଅମ୍ଭେ ଲଙ୍କେଶ୍ୱର
ରାବଣଙ୍କ ଭ୍ରାତା, ଅମ୍ଭ ନାମ ବିଭୀଷଣ; ଅମ୍ଭେ ଅମ୍ଭ ଭ୍ରାତାଙ୍କୁ
ଜନସ୍ଥାନରୁ ହରଣକରି ଆଣିଥିବା ଜାନକୀଙ୍କୁ ରାମଚନ୍ଦ୍ରଙ୍କୁ
ଅର୍ପଣ କରିବାକୁ ଅନେକ ବୁଝାଇ କହିଥିଲୁ ମାତ୍ର ମୁମୂର୍ଷୁ
ଲୋକଙ୍କୁ ଔଷଧ ଅପ୍ରୀତିକର ବୋଧ ହେଲାପରି ଆମ୍ଭର ସମସ୍ତ
ହିତକର ବଚନ ତାହାଙ୍କୁ ପ୍ରୀତିକର ବୋଧ ହେଲାନାହିଁ,
ସେ ଅମ୍ଭଙ୍କୁ ନାନାପ୍ରକାର କଟୁବାକ୍ୟ କହି ରାଜ୍ୟରୁ ତଡ଼ି-
ଦେଇ ଅଛନ୍ତି, ଅମ୍ଭେ ସ୍ତ୍ରୀ ପୁତ୍ର ତ୍ୟାଗକରି ରାମଚନ୍ଦ୍ରଙ୍କର
ଶରଣ ନେବାକୁ ଏଠାକୁ ଆସିଅଛୁଁ; ତୁମ୍ଭେମାନେ ଶରଣ
ବତ୍ସଳ ରାମଙ୍କୁ ରାବଣ ଭ୍ରାତା ବିଭୀଷଣ ଆପଣଙ୍କର ଶରଣ
ନେବାକୁ ଆସିଅଛନ୍ତି ବୋଲି ଜଣାଇ ଦିଅ ।

ବିଭୀଷଣ— ( ହନୁମାନଙ୍କମଦ ପ୍ରବିଷ୍ଟ ହୋଇ ) ମିତ୍ର ! ରାବଣ ଭ୍ରାତା
ଅତର୍କିତଭାବେ ଅମ୍ଭ ସୈନ୍ୟମଧ୍ୟରେ ପ୍ରବେଶ କରି ଅଛି, ସେ
ସୁଯୋଗ ପାଇଲେ ଅମ୍ଭ ସୈନ୍ୟମାନଙ୍କୁ ବିନାଶ କରି ପାରେ,
ଏ ଦୁରାତ୍ମାକୁ ତୀବ୍ର ପ୍ରହାରଦ୍ୱାରା ବିନାଶ କରିବା ଉଚିତ
ହେଉଅଛି ।

ହନୁମାନ—ମହାରାଜ ! ଅଗନ୍ତୁକ ଶରଣପ୍ରାର୍ଥୀ ଲୋକଙ୍କୁ ବିନାଶ
କରିବା ଉଚିତ ନୁହେ, ମୁଁ ଜାଣେ ବିଭୀଷଣ ଧାର୍ମିକ ସେ

ଯେତେବେଳେ ଆମ୍ଭପରିଚୟ ଦେଉ ଅଛନ୍ତି ସେତେବେଳେ ତାହାଙ୍କର କୌଣସି ଦୁଷ୍ଟ ଅଭିସନ୍ଧି ଥିଲାପରି ବୋଧ ହେଉନାହିଁ, ବୋଧହୁଏ ବାଲିଙ୍କ ନିଧନ, ଆମ୍ଭମାନଙ୍କର ଯୁଦ୍ଧ ସଜ୍ଜା ଆଉ ରାବଣର ବୃଥାଗର୍ବ ଏସବୁ ଆଲୋଚନା କରି ଦେବଙ୍କର ଶରଣ ନେବାକୁ ଆସିଥିବେ ।

ସୁଗ୍ରୀବ—ଯେ ବିପଦ ଉପସ୍ଥିତ ହେବାରୁ ଦେଖି ନିଜ ଭାଇଙ୍କୁ ତ୍ୟାଗ କରି ଆସିଅଛି, ତାହାକୁ ସଂଗ୍ରହ କରିବା ଆମ୍ଭ ମତରେ ଉଚିତ ନୁହେ, ସଙ୍କଟକାଳରେ ସେ ଆମ୍ଭମାନଙ୍କୁ ମଧ୍ୟ ତ୍ୟାଗ କରିପାରେ ।

ରାମ—ମିତ୍ର ! ବିଭୀଷଣ ଆମ୍ଭର କି ଅପକାର କରି ପାରିବେ ? ଆମ୍ଭେ ରାକ୍ଷସମାନଙ୍କୁ ଗଣନା କରୁନାହିଁ, ଆଉ ଶତ୍ରୁ ସୁଦ୍ଧା ଶରଣ ପ୍ରାର୍ଥୀ ହେଲେ ତାହାକୁ ରକ୍ଷା କରିବା ଧାର୍ମିକ ଲୋକର କର୍ତ୍ତବ୍ୟ, ବିଭୀଷଣ ହଉ, ବା ନିଜେ ରାବଣ ହଉ, ଯେତେ-ବେଳେ ଶରଣ ପ୍ରାର୍ଥନା କରୁଅଛନ୍ତି ତାହାଙ୍କୁ ଆମ୍ଭେ ଅଭୟ ଦେଇ ଅବଶ୍ୟ ରକ୍ଷା କରିବୁଁ, ତୁମ୍ଭେ ଯାଇଁ ତାହାଙ୍କୁ ଶୀଘ୍ର ଏଠାକୁ ଘେନିଆସ ।

ସୁଗ୍ରୀବ—ମିତ୍ରଙ୍କର ଯେ ଇଚ୍ଛା । ( ପ୍ରସ୍ଥାନ )

ଲକ୍ଷ୍ମଣ—ଆପଣ ଭଲ ବିଚାରିକଲେ, ଶରଣପ୍ରାର୍ଥୀ ଲୋକଙ୍କୁ ଆଶ୍ରୟ ଦେବା ଉଚିତ, ରାକ୍ଷସମାନେ ମାୟାବୀ, ଏହାଙ୍କୁ ସଂଗ୍ରହ କରିଥିଲେ ଏହାଙ୍କଦ୍ୱାରା ସେମାନଙ୍କ ମାୟା ଜଣା ପଡ଼ିଯିବ ।

ବିଭୀଷଣ—( ସୁଗ୍ରୀବଙ୍କସହ ଉପସ୍ଥିତ ହୋଇ ) ପ୍ରଣାମ, ରାଜକୁମାର ! ଆମ୍ଭେ ଜାନକୀଙ୍କୁ ଆପଣଙ୍କ ନିକଟରେ ଅର୍ପଣ କରିବାକୁ ଆମ୍ଭ ଭ୍ରାତାଙ୍କୁ କହିବାରୁ ସେ ଆମ୍ଭକୁ ନୀଚ ପରି ଭର୍ତ୍ସନା କଲେ, ଏ ହେତୁ ଆମ୍ଭେ ଲଙ୍କାପୁରୀ, ଧନସମ୍ପତ୍ତି ଏବଂ ମିତ୍ରବର୍ଗଙ୍କୁ ତ୍ୟାଗ କରି ଆପଣଙ୍କର ଶରଣପ୍ରାର୍ଥୀ ହୋଇ ଆସିଅଛୁଁ ।

ବର୍ତ୍ତମାନ ଅମୃତ ଜୀବନ ଆଉ ସୁଖ ଆପଣଙ୍କ ଅଯତ୍ନରୁ ରହିଲା ।

ରାମ—ବିଭୀଷଣ ! ତୁମ୍ଭେ କୌଣସି ଭାବନା କର ନା, ଆମ୍ଭେ ଅବଶ୍ୟ ତୁମ୍ଭଙ୍କୁ ରକ୍ଷାକରିବୁଁ ଏବଂ ତୁମ୍ଭ ଦୁର୍ବୃତ୍ତ ଭ୍ରାତାକୁ ବିନାଶ କରି ତୁମ୍ଭଙ୍କୁ ଲଙ୍କାରେ ଅଧୀଶ୍ୱର କରାଇବୁଁ । ତୁମ୍ଭେ ଯଥାର୍ଥରୂପେ କହିଲ, ତୁମ୍ଭ ଭାଇଙ୍କର ବଳାବଳ କିପରି ?

ବିଭୀଷଣ—ଆଜ୍ଞା, ଆମ୍ଭ ଭ୍ରାତା ରାବଣ ପ୍ରଜାପତିଙ୍କ ବରରେ ସମସ୍ତଙ୍କର ଅବଧ୍ୟ ଅଟନ୍ତି, ଆମ୍ଭ ମଧ୍ୟମ ଭ୍ରାତା କୁମ୍ଭକର୍ଣ୍ଣ ଯୁଦ୍ଧରେ ଦେବରାଜ ଇନ୍ଦ୍ରଙ୍କୁ ସୁଦ୍ଧା ପରାଜୟ କରି ପାରନ୍ତି ଆଉ ରାବଣଙ୍କ ଜ୍ୟେଷ୍ଠପୁତ୍ର ଇନ୍ଦ୍ରଜିତ ମହାବଳୀ ଅଟନ୍ତି, ସେ ହୋମଦ୍ୱାରା ଅଗ୍ନିଙ୍କୁ ତୁଷ୍ଟ କରି ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି, ତୁମୁଳ ସଂଗ୍ରାମ କାଳରେ ସୈନ୍ୟସଙ୍କୁଳ ଯୁଦ୍ଧକ୍ଷେତ୍ରରୁ ହଠାତ୍ ଆକାଶକୁ ଅନ୍ତର୍ହିତ ହୋଇ ଅଦୃଶ୍ୟ ଭାବରେ ଶତ୍ରୁମାନଙ୍କୁ ସଂହାର କରନ୍ତି, ମହାବୀର ପ୍ରହସ୍ତ ତାହାଙ୍କର ପ୍ରଧାନ ସେନାପତି ଅଟନ୍ତି । ମହୋଦର, ମହାପାର୍ଶ୍ୱ, ଅକମ୍ପନ ପ୍ରଭୃତି ତାହାଙ୍କର ଉପସେନାପତି ଅନେକ ଅଛନ୍ତି ।

ରାମ—ତୁମ୍ଭ ଭ୍ରାତାଙ୍କ ଲଙ୍କାପୁରୀ କିପରି ରକ୍ଷିତ ହୋଇଅଛି ?

ବିଭୀଷଣ—ଆଜ୍ଞା, ଆମ୍ଭ ଭ୍ରାତାଙ୍କ ଲଙ୍କାପୁରୀ ଅଦୃଶ୍ୟ ଭାବେ ରକ୍ଷିତ ହୋଇଅଛି, ଏଥିରେ ଶତ୍ରୁ ପ୍ରବେଶ କରିବା ସହଜ ନୁହେ, ଏହାର ଚତୁର୍ଦ୍ଦିଗରେ ନାନା ରତ୍ନଖଚିତ ସୁଦୃଢ଼ ସ୍ୱର୍ଣ୍ଣମୟ ପ୍ରାଚୀରକୁ ଧର୍ଷଣ କରିବା ଦେବ ଦାନବମାନଙ୍କର ଅସାଧ୍ୟ, ଏହାର ଚତୁର୍ଦ୍ଦିଗରେ ସୁଦୃଢ଼ କପାଟ ବନ୍ଧ ଚାରିଗୋଟି ପ୍ରକାଣ୍ଡ ଦ୍ୱାର ଅଛି, ଏହି ଦ୍ୱାରମାନଙ୍କ ନିକଟରେ ସୁଦୃଢ଼ ବୃହତ୍ ଅଗ୍ନି ବାଣମାନ ସ୍ଥାପିତ ହୋଇଅଛି, ଏମାନଙ୍କଦ୍ୱାରା ଶତ୍ରୁମାନେ

ବାହାରୁ ନିବାରିତ ହୋଇ ରହି ଯାଆନ୍ତି, ଭୀଷଣ ନକ୍ର ସମାକୁଳ ବର୍ତ୍ତୁଳ ସୁଗଭୀର ଜଳପୂର୍ଣ୍ଣ ଅଗାଧ ଓ ଦୁସ୍ତର ପରିଖା ଏହାର ଚତୁର୍ଦ୍ଦିଗରେ ବେଢି ରହିଅଛି, ଏହି ପରିଖା ପାର ହେବା ନିମିତ୍ତ ଗୃହଦ୍ୱାରେ ଗୃହଗୋଟି ସୁପ୍ରଶସ୍ତ ସେତୁ ଅଛି, ଏହି ସେତୁମାନ ପ୍ରାଚୀର ଉପରସ୍ଥ ଯନ୍ତ୍ରବାଣମାନଙ୍କ ଦ୍ୱାରା ସୁରକ୍ଷିତ ।

ରାମ—ବିଭୀଷଣ ! ତୁମ୍ଭ ଭାଇଙ୍କର ବଳାବଳ ଏକ ପ୍ରକାରେ ଜଣା ପଡିଲା, ଆମ୍ଭେ ନିଶ୍ଚୟ ତୁମ୍ଭ ଭ୍ରାତାଙ୍କୁ ସବଂଶେ ବିନାଶ କରି ତୁମ୍ଭଙ୍କୁ ଲଙ୍କାରେ ଅଭିଷିକ୍ତ କରାଇବୁଁ । ସେ ଭୂଗର୍ଭରେ ବା ପାତାଳରେ ପ୍ରବେଶ କଲେ ସୁଦ୍ଧା ପ୍ରାଣ ଥାଉ ଥାଉ କଦାପି ଆମ୍ଭ ହସ୍ତରୁ ରକ୍ଷା ପାଇ ପାରିବେ ନାହିଁ ।

ବିଭୀଷଣ—ଆଜ୍ଞା, ମୁଁ ମଧ୍ୟ ରାକ୍ଷସ ବଧ ଆଉ ଲଙ୍କା ପରାଜୟ ବିଷୟରେ ଯଥାସାଧ୍ୟ ଆପଣଙ୍କୁ ସାହାଯ୍ୟ କରିବି ।

ନଳ—( ପ୍ରବିଶ୍ୟ ହୋଇ ) ଆଜ୍ଞା, ଲଙ୍କା ପର୍ଯ୍ୟନ୍ତ ସୁଦୃଢ ସେତୁ ନିର୍ମିତ ହୋଇଅଛି । ବାନରମାନେ ସେହି ସେତୁ ଉପରୁ ସମୁଦ୍ରକୁ ଲମ୍ଫପ୍ରଦାନ କରି ସନ୍ତରଣ କରୁ ଅଛନ୍ତି ଆଉ ଅନେକ ସେହି ସେତୁ ବାଟେ ଲଙ୍କାକୁ ବାହାରି ଗଲେଣି ।

ରାମ—( ସାଶ୍ଚର୍ଯ୍ୟେ ) କିଅଣ ! ସେତୁ ନିର୍ମାଣ କାର୍ଯ୍ୟ ଶେଷ ହୋଇ-ଅଛି ?

ନଳ—ଆଜ୍ଞା,

ରାମ—ବିଭୀଷଣ, ଆସ, ସମସ୍ତେ ଯିବା ଦେଖିବା କିପରି ସେତୁ ନିର୍ମିତ ହୋଇଅଛି ।

ବିଭୀଷଣ—ଯେ ଆଜ୍ଞା ( ସମସ୍ତଙ୍କର ପ୍ରସ୍ଥାନ । ) ।

---

୬ଷ୍ଠ ଦୃଶ୍ୟ ।

( ସମୁଦ୍ର ମଧ୍ୟରେ ସେତୁ ନିର୍ମାଣର ବର୍ଣ୍ଣନା । )

ବିଭୀଷଣ—ରାଜକୁମାର ! ସମୁଦ୍ରରେ ସେତୁ ଏହା ଆମ୍ଭେ କେବେ ଶୁଣି ନ ଥିଲୁଁ ।

ରାମ—ଏ କାର୍ଯ୍ୟ ଏ ରତ୍ନାକରଙ୍କ ଅନୁଗ୍ରହରୁ ସାଧିତ ହୋଇଅଛି ।

ରତ୍ନାକର—ରଘୁନନ୍ଦନ ! ଏବେ ତୁମ୍ଭ ମନୋରଥ ପୂର୍ଣ୍ଣ ହେଲା ? ଆଉ ତୁମ୍ଭର କି ଉପକାର କରିବୁଁ କହ ।

ରାମ—ଦେବ ! ଆପଣ ମୋ ପ୍ରତି ଏ ଯେଉଁ ଅନୁଗ୍ରହ କରି ଅଛନ୍ତି, ଏଥିରୁ ବଳି ମୋହର ଆଉ କି ପ୍ରିୟକାର୍ଯ୍ୟ ଅଛି ଯେ ମୁଁ ଆପଣଙ୍କୁ ପ୍ରାର୍ଥନା କରିବି । ଯଦି ପ୍ରସନ୍ନ ଅଛନ୍ତି ତେବେ ଏହି ଆଶୀର୍ବାଦ କରନ୍ତୁ, ପୃଥିବୀ ଶସ୍ୟଶାଳିନୀ ହେଉ, ସମସ୍ତ ପ୍ରଜା ସୁଖରେ ରହନ୍ତୁ, ବିଦ୍ୱାନଲୋକ ମାନଙ୍କର ଆଦର ବଢ଼ୁ ।

ରତ୍ନାକର—ତଥାସ୍ତୁ ।

ଇତି ସେତୁବନ୍ଧନ ନାଟକ ସମାପ୍ତ ।

—— ୫ ——